ଉତ୍ସର୍ଗ :

ପରମ ପୂଜନୀୟ ପିତୃଦେବ
ଶ୍ରୀଯୁକ୍ତ **ଖବଗ୍ରାହୀ ଦାସଙ୍କ**
କର କମଳରେ ।

—ବିଭା

**ଅଦୃଶ୍ୟ ଅମୃତ** ।। ଗଳ୍ପ-ସଂକଳନ ।। ଲେଖିକା : ବିଭା ମହାନ୍ତି, ବିକାଶ ନଗର, କଟଣୀ, ଜି : ଖୋର୍ଦ୍ଧା ।। ପ୍ରକାଶକ : ସୁରେନ୍ଦ୍ରନାଥ ଜଗଦେବ, ମହାନଦୀ ବୁକ୍ସ, ମୂଲ୍ୟାୟନ ବିହାର, ଏମ୍. ଏ. ୫୨ ସାମନା, ଜି. ଜି. ପି. କଲୋନୀ, ରସୁଲଗଡ଼, ଭୁବନେଶ୍ୱର-୭୫୧୦୧୦ ।। ପ୍ରଥମ ପ୍ରକାଶ : ଅଗଷ୍ଟ, ୧୯୯୬ ।।

**Adrushya Amruta** : A Volume of Stories in **Oriyai** Writer (Smt.) Bibha Mohanty. Publisher : S. N. Jagadeb, Mahanadi Books, Mulyayana Vihar, M. A. 52 Front, G.G.P. Colony, Rasulgarh, Bhubaneswar-751010, India. First Published : August, 1996

ମୂଲ୍ୟ : **ତିରିଶ ଟଙ୍କା**।

Price : **Rupees Thirty / Ten Dollars**

# ॥ ଏ ବହିଟି ବିଷୟରେ ଦୁଇ ପଦ ॥

ଏହି ଗଳ୍ପ-ସଂକଳନରେ ପ୍ରକାଶିତ ହେବାକୁ ଯାଉଥିବା ଗଳ୍ପଗୁଡ଼ିକରୁ କେତେକ "ସହକାର", "ଅମୃତାୟନ", "ପାଞ୍ଚଜନ୍ୟ" ଓ "ପକ୍ଷୀଘର" ଇତ୍ୟାଦି ପତ୍ରପତ୍ରିକାରେ ପ୍ରଥମେ ପ୍ରକାଶିତ ହୋଇଥିଲା । ଏ ଅବସରରେ ସଂପୃକ୍ତ ପତ୍ରିକାର ସମ୍ପାଦକ/ସମ୍ପାଦିକା ଓ ପରିଚାଳନା କର୍ତ୍ତୃପକ୍ଷଙ୍କୁ ଆନ୍ତରିକ ଧନ୍ୟବାଦ ଜ୍ଞାପନ କରୁଛି ।

ମୋର ପୂର୍ବ ଗଳ୍ପ-ସଂକଳନ "ଆଇନାର ଦୁଇ ପାଖ"ର ପ୍ରକାଶନ ଭଳି ଏ ସଂକଳନର ପ୍ରକାଶନରେ ମଧ୍ୟ ମହାନଦୀ ବୁକ୍ସର ଅବୈତନିକ ନିର୍ଦ୍ଦେଶକ ଅଧ୍ୟାପକ ଶ୍ରୀଯୁକ୍ତ ପ୍ରଫୁଲ୍ଲ କୁମାର ଜଗଦେବଙ୍କର ଅକୁଣ୍ଠ ସାହାଯ୍ୟ ଓ ସହାନୁଭୂତି ମୋତେ ଅଭିଭୂତ କରିଛି । ଏ ସମୟରେ ଆଉରି ବି ମନେପଡ଼ୁଛନ୍ତି ମୋତେ ସାହିତ୍ୟ-ସାଧନା ପାଇଁ ସବୁବେଳେ ଉତ୍ସାହ ଦେଇ ଆସୁଥିବା ପ୍ରଖ୍ୟାତ ସାହିତ୍ୟିକ ଶ୍ରୀଯୁକ୍ତ ଲକ୍ଷ୍ମୀଧର ନାୟକ । ଉଭୟଙ୍କ ନିକଟରେ ମୋର ଅଶେଷ କୃତଜ୍ଞତା ଅର୍ପଣ କରୁଛି ।

ଗଳ୍ପ ରଚନାର କୌଣସି ଥିଓରୀ ଅବଲମ୍ବନ କରି ଏ ଗଳ୍ପଗୁଡ଼ିକ ରଚିତ ହୋଇ ନାହିଁ । ମୋ ଚାରିପଟେ ଘଟୁଥିବା ଘଟଣା ସବୁକୁ ଓ ଘୂରି ବୁଲୁଥିବା ଚରିତ୍ରମାନଙ୍କୁ ପର୍ଯ୍ୟବେକ୍ଷଣ କରୁଥିବା ବେଳେ ମୋ' ମନରେ ସେମାନଙ୍କ ମଧ୍ୟରୁ କେତେକ ଗଭୀର ରେଖାପାତ କରନ୍ତି । ସେମାନଙ୍କୁ ଯଦି ମୁଁ ଠିକ୍ ଭାବରେ ନେଇ ଆଣି ଥୋଇ ପାରିଛି ଓ ସେଥିରୁ ପାଠକମାନେ କିଞ୍ଚିତ୍ ଆନନ୍ଦ ପାଇ ପାରିଛନ୍ତି, ତା' ହେଲେ ମୋ ଶ୍ରମ ସାର୍ଥକ ମନେ କରିବି । ଅଲମତି ବିସ୍ତରେଣ ।

ଶ୍ରୀଗୁଣ୍ଡିଚା
ତା ୧୬-୭-୧୯୯୭

ବିଶ୍ୱ ମହାନ୍ତି
ବିକାଶ ନଗର, ଜଟଣୀ

# ॥ ସୂଚୀ ॥

# ପରିଚୟ

ପିଟର ପକେଟରେ ହାତ ଭର୍ତ୍ତି କରି ପଦାକୁ ବାହାରି ଆସିଲା । ସେଲର ଏପର୍ଯ୍ୟନ୍ତ କାମ ସରିନି । ଅତଏବ ଅପେକ୍ଷା କରି ଲାଭ ନାହିଁ ।

ପିଟର ରାସ୍ତା ଉପରକୁ ଓହ୍ଲାଇ ଆସିଲା । ରାସ୍ତାରେ ସେମିତି କିଛି ଗହଳି ନାହିଁ । କାଁ ଭାଁ ଗୋଟାଏ ଦୁଇଟା ମଟରଗାଡ଼ିକେବଳ ଯିବା ଆସିବା କରୁଛି । ତାଗୁଡ଼ିକ ନାଗୁଛିଆ...ଖାଁ...ଖାଁ ।

ଘଣ୍ଟାରେ ସାଢ଼େଚାରିଟା ବାଜୁଛି । ଘରକୁ ଫେରି ବର୍ତ୍ତମାନ ଲାଭ ନାହିଁ । ପିଟର ଜାଣେ ଘରେ ଚିନି ନାହିଁ । ବଜାରରେ ଚଢ଼ା ଦରରେ ମିଳୁଥିଲା, ଏବେ ତା' ବି ମିଳିବା କଷ୍ଟ । ଦୋକାନିମାନେ ତାକୁ ମଧ୍ୟ ଲୁଚାଇ ଦେଲେଣି । ଅଧିକ ଦର ବଢ଼ି ଯିବା ପାଇଁ ।

ସେପରି କୌଣସି ସମ୍ଭ୍ରାନ୍ତ ହୋଟେଲରେ ଚା ପିଇବାର ସାମର୍ଥ୍ୟ ତାର କ୍ଷମତା ନଥିଲା ତଥାପି ସେ ପଶିଗଲା "ବ୍ଲୁ ବାର୍ଡ" ହୋଟେଲକୁ, କାରଣ ଆଖପାଖରେ ସେମିତି କୌଣସି 'ଚଟି' ଚା' ଦୋକାନ ନାହିଁ ।

ପିଟର ସିଧା ଚା' ହୋଟେଲ ଭିତରେ ପଶିଯାଇ ବେହେରାକୁ କପେ ଚା' ମାଗି କୁସନଦିଆ ଚେୟାର ଉପରେ ବସିପଡ଼ିଲା । ତାକୁ ବେଶ ଆରାମ ଲାଗୁଥିଲା । ଦିନ ଦଶରୁ ଚାରିଟା ପର୍ଯ୍ୟନ୍ତ ଅଫିସ'ର କାଠ ଚେୟାରଟା ଉପରେ ବସି ବସି ଗୋଡ଼ ଦି'ଟା ସେମିତି କାଠି ହୋଇ ଯାଇଥିଲା । ପ୍ରଥମେ ସିଧା ହୋଇ ଅବଶରେ ଛିଡ଼ମୋଡ଼ି ହୋଇ ଟେବୁଲଟା ଉପରେ ଏକରକମ ହାମୁଡ଼େଇ ହୋଇପଡ଼ିଲା ସେ ।

ବେହେରା ଚା' ଆଣିଲା । ସେ ଲକ୍ଷ୍ୟକଲା, ବେହେରାର ଧଳା ପଟଡ଼ାଟା ତା' ଜାମା ଠାରୁ ମଧ୍ୟ ଅଧିକ ପରିଷ୍କାର । ନିଜକୁ ପିଟର ଟିକେ ଅପମାନିତ ବୋଧକଲା, କେମିତି ସଙ୍କୁଚିତ ହୋଇପଡ଼ିଲା, ଦେଖିଲା ତାର ଛିଣ୍ଡା ଚଟିଟାକୁ ବେହେରାଟା ନିର୍ନିମେଷ ନୟନରେ ଚାହିଁ ରହିଛି । ପିଟର ନିଜକୁ ପୂର୍ବଅପେକ୍ଷା ଅଧିକ ଅସହାୟ ବୋଧ କଲା । ଦୈନ୍ୟ ଜଣେ ଦେଖିସାରିଲା ପରେ ତାକୁ ଲୁଚେଇବାର ମାନେ କିଛି ହୁଏନା । ତେଣୁ ପିଟର ଆଗପରି ବେପରୁଆଭାବରେ ଗୋଡ଼ ଦୁଇଟାକୁ ହଲାଇବାକୁ ଲାଗିଲା । ବେହେରା ସାମାନ୍ୟ ହସିଲା । କାନରୁ ପେନସିଲ କାଢ଼ି ବିଲ୍ ଲେଖି ଚା'କପ୍ ତଳେ ଥୋଇଦେଇ ଚାଲିଗଲା ।

ପିଟର ଅଶ୍ୱସ୍ତି ଭୋଗି ଚା' କପ୍‌ଟାକୁ ଟେବୁଲ ଉପରୁ ହଟାଇ ଆଣି ଓଠ ସାମ୍ନାରେ ଟେକି ଧରିଲା । ଡାଲ୍ ବାଁ ହାତରେ ପୁରାଇଲା ପକେଟରେ । କପ୍‌ରେ ପ୍ରଥମ ଚୁମ୍ବନ ଦେବା ପୂର୍ବରୁ ଗରମ ଚା' ଭିତରେ ଯେମିତି ହେଲେନର ମୁହଁଟା ଦେଖିପାରିଲା ସେ, କରୁଣ ଛଳ ଛଳ ଆଖି, ଅସମୟରେ ବୟସର ଛାପ ପଡ଼ି ଯାଇଥିବା ମୁହଁ । ହେଲେନ ସଙ୍ଗରେ ଥିଲେ କପଟାକୁ ଦୁଇକପ କରିଦେଇଥାଆନ୍ତେ ସେମାନେ । ଯାଃ...ହେଲେନଟାର କଣ ଯେ ଏତେ କାମ ! ଲେଡି ଟାଇପିଷ୍ଟମାନଙ୍କ ପାଖରେ ଏ ଟୋକା ଅଫିସର-ଗୁଡ଼ାଙ୍କର ବେଶୀ କାମ । ବେଳେ ବେଳେ ତ ପିଟର ଘରକୁ ଆସି ପୁନର୍ବାର ହେଲେନକୁ ଆଣିବା ପାଇଁ ଅଫିସ ଯାଇଛି ।

ବେଳେ ବେଳେ ତାର ଇଚ୍ଛା ହୁଏ ଚାକିରି କରିବାକୁ ହେଲେନକୁ ସେ ମନା କରିବ । କିନ୍ତୁ ମନା କରିବାର ଗ୍ରାଉଣ୍ଡ୍ ବା କଣ ? ଏହା କରିବା ଦ୍ୱାରା ହେଲେନର ସନ୍ଦେହ ଭିତରକୁ ସେ ଆସି ଯାଇପାରେ । ଅଗତ୍ୟା ପିଟର ଚୁପ ରହେ ।

ଚା' ପିଇସାରି ପିଟର ଆସି କାଉଣ୍ଟର ପାଖରେ ଛିଡ଼ା ହେଲା । ବଡ଼ ବଡ଼ ଆଖି କରି ବିଲ୍‌ଟାକୁ ପଢ଼ି ନେଲା । ବାରଣା ପଇସା ଦେଇ ହୋଟେଲ ପାହାଚ ଓହ୍ଲେଇ ଆସିଲା ବେଳେ ସେ ଭାବୁଥିଲା ଏଇ ବାରଣା ପଇସାରେ ସେ ଅନ୍ତତଃ ତିନଥର ଚା' ପିଇ ପାରିଥାନ୍ତା ।

ପିଟର ପୁନର୍ବାର ଚାଲିବାକୁ ଆରମ୍ଭ କରିଦେଲା । ପଛରୁ ଆସୁଛି ଗୋଟାଏ ବସ୍ । ବସ୍‌ରେ ଚାଲିଗଲେ ଭଲ ହୁଅନ୍ତା । ଅଳ୍ପ ପଇସା ଲାଗନ୍ତା । ବସ୍‌ଟାକୁ ଦେଖି ତା ଗୋଡ଼ ଦୁଇଟା କାହିଁକି ପ୍ରାଣହୀନ ଜଣା ପଡ଼ୁଛି । ହେଲେନ ବି ହୁଏତ ଏ ବସ୍‌ଟାରେ ଯାଉ ଥାଇପାରେ । ବସ୍‌ରେ ଚଢ଼ିଗଲେ ସେ ଟିକିଏ ଖୁସି ହେବ ନିଶ୍ଚୟ । ଏଇତ, ବସ୍‌ଟି ଟପିଗଲା ତାକୁ । ସେ ଚଢ଼ିବ କି ନ ଚଢ଼ିବ କିଛି ସମାଧାନ କରିବା ପୂର୍ବରୁ ବସ୍‌ଟା ଚାଲିଗଲା ।

ଟିକିଏ ସମୟ ପରେ ବସ ଭିତରୁ କେହି ତା' ନାଁ ଧରି ଡାକିବାର ପିଟର ଶୁଣି ପାରିଲା । ଅନେଇ ଦେଖିଲା ବସ୍ ତା' ଠାରୁ ଅଳ୍ପଦୂରରେ ଯାଇ ରହିଯାଇଛି । ଆଉ ହେଲେନ ରୁମାଲ୍‌ରେ ମୁହଁ ପୋଛି ପୋଛି ଓହ୍ଲାଇ ଆସୁଛି ବସ୍‌ରୁ । ପିଟର ମନେ ମନେ ହସିଲା । ହେଲେନ ବସ୍ ରଖି ତାକୁ ତ ବସ୍‌ରେ ଉଠାଇ ନେଇପାରିଥାଆନ୍ତା । ନା...ହେଲେନ ଓହ୍ଲାଇ ଆସିଲା । ବସ୍‌ଟା ଚାଲିଗଲା ଦେଖି କିଛିଟା ଦୂର । ପିଟର ଜାଣିଲା, ହେଲେନ ନିକଟରେ ନିଶ୍ଚୟ ପଇସା ନାହିଁ । ମାସ ସରି ଆସିଲାଣି, ପଇସାର ବଡ଼ ଅଭାବ । ପିଟର ଅନ୍ୟମନସ୍କ ଭାବେ ପକେଟ ଉଣ୍ଡାଳିଲା । ସିଗାରେଟଟାଏ ମିଳିଗଲେ ନିଶ୍ଚିନ୍ତରେ ଅଉ କିଛିବାଟ ଚାଲି ଯାଇହୁଅନ୍ତା ।

ହେଲ ପାଖକୁ ଆସିଗଲା । ଗ୍ଲାଇଟା ତାର ଖୁବ୍ ଲମ୍ବା ହୋଇ ପିଚୁ ରାସ୍ତାଟା ଉପରେ ପଡ଼ୁଛି । ରାସ୍ତା ଏବେବି ଗହଳ ହୋଇନି ।

ଆସି ଦାନ୍ତ ନିକୁଟି ହସିଲା । ତା ହସଟାଇ ଦେଖୁବେଳେ ଏମିତ, ମୁହଁକୁ ଅନେଇ ଦେଲେ ସେ ହସି ଦିଏ । ଯେମିତ ଏଇ ଗୋଟିଏ ସମ୍ପଦ ଛଡ଼ା ସେ ନିଃସ୍ୱ !

ପିଟରର ପେଟ ଭିତରଟା କେମିତ ଅଶାନ୍ତି ହୋଇଗଲା । ହାଲୁଟିଟାଏ ଉଠିଲା ଜୋରରେ । ଗୃ' ପରେ ସିଗାରେଟଟାଏ ଅନ୍ତତଃ ନିତାନ୍ତ ଆବଶ୍ୟକ ।

ରାସ୍ତାର ଏପାଖ ସେପାଖକୁ ଅନେଇଲା ପିଟର କେଉଁଠି ଯଦି ପାନ ଦୋକାନଟାଏ ନଜରରେ ପଡ଼ିଯାଏ । ଘର ଏବେବି ଅନେକ ଦୂର । ନା…ଦୋକାନ ନାହିଁ । ସହରର ଏମ ପାର୍ଶ୍ୱଟି ନିତାନ୍ତ ଫାଙ୍କା ।

ପିଟରର ମନଟା ବି କେମିତ ଫାଙ୍କା ଲାଗିଲା । ହାତକୁ ୫୦ ପାଖରେ ରଖି ସେ ସିଗାରେଟ ଫୁଙ୍କିବାର ଅଭିନୟ କଲା । ସିଗାରେଟ ନଥିଲେ ସେ ଏମିତ କରେ ।

ହେଲ ନୀରବରେ ଚାଲୁଥିଲା, ବୋଧହୁଏ ନିଜ ଭିତରେ ଯେମିତ ପାଣିଡଲେ ଚାଲେ । ପିଟରର ଅଭିନୟ ଦେଖି ସେ ବେଙ୍ଗ ଭଳି ଫକ୍କଳନା ଡେଇଁ ପଡ଼ି ପିଟରର ହାତଟାକୁ ଗୋଦାର ଅଣିଲା । କାନ୍ଧରେ ପକାଇଥିବା ଭ୍ୟାନିଟି ବ୍ୟାଗରୁ ଖଣ୍ଡିଏ ସିଗାରେଟ କାଢ଼ି ଧରେଇ ଦେଲା ତା' ହାତରେ ।

ହୁର୍‌ରେ…ଆଗରୁ ଆସୁଛି ମଟର ସାଇକେଲଟାଏ । ପିଟର ଅଳ୍ପକେ ନିଜକୁ ରକ୍ଷା କରିଦେଲା । ହେଲ ହାତେ ଲମ୍ବର ଲାଭ କାମୁଡ଼ି ପକାଇଲା । ବେକରେ ଲଟକିଥିବା କ୍ରସ ଲକେଟଟାକୁ ପିଟରର କପାଳରେ ଛୁଆଁଇ ଦେଲା । ଓ ଗଡ୍ ! କି ଆକ୍ସିଡେଣ୍ଟ ହୋଇଥାଆନ୍ତା… !!

ଆକ୍ସିଡେଣ୍ଟ ! କିଏ ହେଲ, ଜୀବନଟାତ ଗୋଟାଏ ଆକ୍ସିଡେଣ୍ଟ । ପିଟର ହସିଲା ଦାର୍ଶନିକଙ୍କ ଭଳି । ପୁନର୍ବାର ସେ ଚାଲିଲା ନେପଥ୍ୟ ଗ୍ରହେ ।

ଏଇ ମୁହୂର୍ତ୍ତରେ ଦୁଇଜଣ ଠିଆ ହୋଇଥାଆନ୍ତି । ମୁହାଁମୁହିଁ ପିଟର ଲକ୍ଷ୍ୟ କରେ ହେଲ ପୂର୍ବଅପେକ୍ଷା ସାମାନ୍ୟ ମୋଟା ଦିଶୁଛି । ଗାଲ ଦି'ଟାରେ କିଛି ମାଂସ ଲାଗିଛି । ବେକମୂଳ ଟିକେ ଅଧିକ ଗୋରା ଦିଶୁଛି । ଆଖିରେ ସେଇ ପ୍ରଶ୍ନ । କେବେ ଆମର ସମ୍ଭାବନାର ସ୍ୱପ୍ନ ସତ୍ୟ ହେବ ?

ପିଟର ମୁରୁକି ହସେ । ପୃଥିବୀ କ୍ରମେ ସଙ୍କୁଚିତ ହୋଇ ଆସୁଛି । ଜନସଂଖ୍ୟା ବଢ଼ି ଚାଲିଛି । ଆମେ ଯଦି ପୃଥିବୀରେ…ଟିକିଏ ଜାଗା ଫାଙ୍କା ରହିବାରେ ସାହାଯ୍ୟ କରିବା କ୍ଷତି କଣ ! ଆଖିରେ ସେ ଉତ୍ତର ଦିଏ, ପାଟି ବନ୍ଦ ରଖେ ।

ହେଲେର ପାଦ ଶିଥିଳ ହୋଇଆସେ, ସେ ନିଜକୁ ଟିକେ କ୍ଳାନ୍ତ ମନେକରେ । ତା' ପରେ ଦୀର୍ଘନିଃଶ୍ୱାସ ତ୍ୟାଗ କରି ସେ ଆଗାଏ ଗୋଟିଏ ଗୋଟିଏ ।

ପିଟର୍ କହିଲ, ଆଜି ଖବରକାଗଜରେ ଗୋଟିଏ ଶ୍ରେଷ୍ଠ ସମ୍ବାଦ୍ ପଢ଼ିଛ ?

ହଁ ।

କଣ ?

କୌଣସି ଏକ ଫାର୍ମରେ ଚାକିରୀ ଖାଲି ଅଛି ।

ଧୁତ୍ତେରି··· ପିଟର୍ ବିରକ୍ତ ହେଲା ।

ଆଉ···ସେଲି ନିର୍ବାକ ହୋଇ ଚାହିଁଲା ।

ପିଟର୍ କହିଲ, ହସପିଟାଲରେ ଗୋଟିଏ ମା ତାର ନବଜାତ ପିଲାଟିକୁ ଛାଡ଼ି ଚାଲିଯାଇଛି ।

ହଁ ତ··· ।

କଣ ହେବ ସେ ପିଲାଟାର ?

ସେ କଥା ତା ମା'ଜାଣେ ।

ଜାଣିଥିଲେ ତ ଯାଇନଥାନ୍ତା ।

ଆମକୁ ସେଥିରୁ କଣ ମିଳିବ ?

ଆମେ ପିଲାଟାକୁ ନେଇ ଆସିଲେ କେମିତି ହୁଅନ୍ତା··· ?

ସେ ହିନ୍ଦୁ କି ଖ୍ରୀଷ୍ଟିୟାନ ନଜାଣି ।

ହିନ୍ଦୁ ହୋଇଥିଲେ କ୍ଷତି କଣ ?

ତାକୁ ତ ବନ ନେବାକୁ ହେବ ।

ନବଜାତର ଛୁଆ ତ ବନ୍ ନେବ ?

ହଁ ଆମେ ଯେ ଖ୍ରୀଷ୍ଟିୟାନ··· ।

ହିନ୍ଦୁଙ୍କ ଦେଶରେ ରହୁଛୁତ···ହିନ୍ଦୁର ହାତରେ ଉତ୍ପାଦିତ ଶସ୍ୟ ଖାଉଛୁତ··· ।

ପ୍ରକୃତ ଈଶ୍ୱରଙ୍କର ।

ଆଉ ମଣିଷ ?

ସେଲିର ମୁହଁ ବନ୍ଦ ।

ଆମେ ଯେ ମିଶନାରୀ ଲୋକଛ, ସେଥିରେ କି ହିନ୍ଦୁଶିଶୁ ନାହାନ୍ତି ?—ଥିଲେ, ଏବେ ନାହାନ୍ତି । ଏବେ ସେମାନେ ଖ୍ରୀଷ୍ଟିୟାନ ।

କଣ ତାଙ୍କ ରକ୍ତକୁ ଇଞ୍ଜେକ୍ସନ ଦେଇ ରଙ୍ଗ ବଦଳେଇ ଦେଇଛ ? ସେଲି ଆଉ କିଛି କହିଲ ନାହିଁ । ପିଟର୍ ପୁଣି କହିଲ, ଆମେ ସମସ୍ତେ ଈଶ୍ୱରଙ୍କର । ମଣିଷ ଯଦି ଈଶ୍ୱରଙ୍କର ହୋଇପାରେ ମଣିଷର ହୋଇପାରିବନି କାହିଁକି ?

ପିଚୁରାସ୍ତା ଉପରେ ହେଲେର ଗ୍ରାଇଟା ଆଉ ଦଶୁନ । ଦୁଇପାଖେ ବାଉଳଇଟ୍ ଗୁଡ଼ାକ ଏହା ଭିତରେ ଜଳି ଉଠିଛି । ପିଟରର ମନେହେଲା ରାସ୍ତା ଦୁଇ ପାଖରୁ ଯେମିତି ଅସଂଖ୍ୟ ଜହ୍ନ ଏକୋଦେଲେ ଉଠି ଆସିଛନ୍ତି । ପବନରେ ଟିକେ ଟିକେ ଥଣ୍ଡା ଲାଗିଲେ ପିଟରର ସେ ବୁଢ଼ୀ କଥା ମନେ ପଡ଼େ, ତା'ଘର ସାମ୍ନାରେ ଥିବା ଓ୍ୱେଗଛ ମୂଳେ ଯେ ଗାଉଦନ ବସିଥାଏ । ସରକାରଙ୍କର ବାସହୀନ ଲୋକଙ୍କର ତାଲିକାଭୁକ୍ତ ସେ ନୁହେଁ । କିନ୍ତୁ ପିଟର ତାକୁ ତା' ପରିବାର ତାଲିକାରେ ମିଶାଇ ଦେଇଥିଲା, ତାର କି ପରିବାର ! ସେଲି ଆଉ ସେ । ଖୋଲିଛନ୍ତି ଗୋଟାଏ ମିଶନାରୀ ।

ଘର ଆସି ଯାଇଥିଲା । ପିଟର ଟିକେ ଫେରକୁ ଚାହିଁଯାଇଥିଲା । ହେହି ପାହାଚ ଉପରକୁ ଉଠିଯାଇ ଦରଜା ଖୋଲିଲା । ପିଟର ଗ୍ଲଲା ଓ୍ୱେଗଛ ବୁଢ଼ୀ ପାଖକୁ । ବୁଢ଼ୀଟି କୁଙ୍କୁଡ଼ି କାଙ୍କଡ଼ି ହୋଇ ଛିଣ୍ଡା କମ୍ବଳ ଦେହରୁ ରଖିମ ଟାଣିବାକୁ ଚେଷ୍ଟା କରୁଥିଲା । ଦକ୍ତ ତାର ଶିଥିଲ, ଦେଥିରେ ନିଆଁ ନାହିଁ । ଅଛି ଲିଭିଯାଇଥିବା ନିଆଁର ପାଉଁଶ । ପିଟର ଯାଇ ଘରୁ କମ୍ବଳଟି ନେଇଆସିଲା । ଘୋଡ଼ାଇ ଦେଲା ବୁଢ଼ୀ ଉପରେ । ଏଇ ବୁଢ଼ୀଟାକୁ ଦେଖିଲେ ଲାଗୁଛି ଶୀତ ଆସିଗଲାଣି । ତା'ପରେ ସେ ପାଟିରେ ସୁଶୁର ମାରି ଘରେ ପ୍ରବେଶ କଲା ।

ସେଲି ଷ୍ଟୋଭ୍ ଜାଳି ଚା' ବସାଇଛି । ଚିନି ତ ନଥିଲା । ଲୁଣ ଚା' ହେଲେ ମଧ୍ୟ ଚଳିବ । କିନ୍ତୁ ପିଟରକୁ ଆଶ୍ଚର୍ଯ୍ୟ କରି ଚା'ରେ ଚିନି ମିଶେଇଲା, ଘରଟାରୁ କାର୍ବସିନ ଗନ୍ଧ ଆସୁଛି । ବଜାରରେ କାର୍ବସିନର ମଧ୍ୟ ଘୋର ଅଭାବ, ଅଥଚ ସେଲି ବଡ଼ ଗ୍ଲକ । ସବୁ ନମିଳିଲା ଜିନିଷଟିକ କେଉଁଠୁ କେମିତି ସେ ଖୋଜିଆଣେ । ପିଟର ଗଲେ ଦୋକାନି ମନା କରିଦେବ । କିନ୍ତୁ ସେଲି ଗଲେ ଲିଟରେ ଜାଗାରେ ଦୁଇ ଲିଟର ନେଇ ଆସିବ । ମୂଳେ ତା'ର ସେଇ ହସ ଟିକକ, ତା ଛଡ଼ା ସେ ନିଃସ୍ୱ ।

ବାହାର ଦରଜା ଦେଇ ଘର ଭିତରକୁ ଦଉଡ଼ ଦଉଡ଼ କିଏ ଯେପରି ପଶିଆଇଲା ଶୀତଦିନର ଦମକାଏ ହେମାଳ ପବନ ଭଳି । ପିଟର ଚହ୍ନିଲା ଲୋକଟିକୁ । ସାଇମନ । ସାଇମନ ଚଟାଣଟା ଉପରେ ବସିପଡ଼ି ପ୍ରାୟ ହାଙ୍ଗୁଥିଲା । ଅତି କଷ୍ଟରେ ନିଜକୁ ସମ୍ଭାଳି କରି ସେ କହିଲା—ସାର୍ ! ଜଲଦି ଆସନ୍ତୁ, ପ୍ରାୟ ଅଧାଅଧି ପିଲା ଖାଇସାରିବା ପରେ ହଠାତ୍ ଅସୁସ୍ଥ ହୋଇ ପଡ଼ିଛନ୍ତି ।

ସେଲି ହାତରୁ ଚା' କପ୍‌ଟା ଖସିପଡ଼ିଲା, ତଳେ ପଡ଼ି କାଚ ପ୍ଲେଟ୍‌ଟା ଝଣ ଝଣ ଶବ୍ଦ କରି ଭାଙ୍ଗି ଟୁକୁଡ଼ା ଟୁକୁଡ଼ା ହୋଇଗଲା ।

ପିଟରକୁ ଜଣାଗଲା, ହଠାତ୍ ଯେପରି ଭୂମିକମ୍ପ ଯୋଗୁ ସେ ଘରଟା କମ୍ପି ଉଠିଲା । ଗୋଡ଼ରେ ଚଟିଟା ଗଳେଇ ସେ ଅଣନିଃଶ୍ୱାସୀ ହୋଇ ଦଉଡ଼ିଲା । ପଛରେ ସେଲି ଏବଂ ସାଇମନ ।

ଯୀଶୁଙ୍କ କୃପାରୁ ପିଲାଗୁଡ଼ିକ କ୍ରମେ ସାମାନ୍ୟ ସୁସ୍ଥ ହୋଇ ଉଠୁଛନ୍ତି । ସେଲି କହିଲି ।

ପିଟରର ଦୃଷ୍ଟି ଦୂର ଆକାଶରେ ହଜିଯାଇଥିଲା । ପିଲାଦିନେ ଶୁଣିଥିଲା ଆକାଶରେ ଭଗବାନ ଅଛନ୍ତି । କିଏ ଅଛନ୍ତି ଆକାଶରେ ? ଯୀଶୁ···ଆଲ୍ଲା···ନା କୃଷ୍ଣ ? କିଏ ପ୍ରକୃତରେ ଭଗବାନ ? ସେଲିର ବକ୍ତବ୍ୟ ତା' କାନରେ ପଡ଼ିଲା, ମୃଦୁ ହସି ସେ କହିଲା, ଆଲ୍ଲା ଏବଂ କୃଷ୍ଣ । ଏମାନେ ?

ସେଲି ନୀରବ ରହିଲି ।

ପିଟର ସାମାନ୍ୟ ଉତ୍ତେଜିତ ହୋଇ ସମ୍ମୁଖକୁ ହସ୍ତ ପ୍ରସାରିତ କରି କହିଲା, ଏଠି ସେ ଏଇ ବୁଢ଼ା ଲୋକଟି ଇଞ୍ଜେକସନ ନେଲାବେଳେ 'ହେ କୃଷ୍ଣ' ବୋଲି ଡାକିଲା ସେ କାହାକୁ ଡାକିଲା ? କିଏ ତା କଷ୍ଟ ଲାଘବ କଲା ?

ସେଲି ତେବେ ବି ନୀରବ ।

ଆଚ୍ଛା, ହସପିଟାଲର ଯେଉଁ ଏତେଗୁଡ଼ିଏ ଲୋକ ରୋଗଶଯ୍ୟାରୁ ଝାଡ଼ିହୁଡ଼ି ହୋଇ ଉଠି ସୁସ୍ଥ ଦେହ ମନ ନେଇ ଘରକୁ ଫେରିଯାଉଛନ୍ତି, କିଏ ତାଙ୍କୁ ଦେଉଛି ଦାକ୍ଷିଣ୍ୟ କରୁଛି ? ଆଲ୍ଲା ?

ତଥାପି ସେଲି ନିରୁତ୍ତର ।

ମୋ ପ୍ରଶ୍ନର ଜବାବ ଦିଅ ସେଲି ।

ତମ ପ୍ରଶ୍ନର ଜବାବ ମତେ ଜଣାନାହିଁ । ସେଲି ବିରକ୍ତ ହୋଇ ଉତ୍ତର ଦେଲି, ଏଥର ଚାଲ ଫେରିଯିବା ।

ଚାଲ । ନିରୁତ୍ସାହିତ ଭାବେ ପିଟର କହିଲା । ଫାଦର୍ ଚାଲିଗଲେଣି ପ୍ରାୟ ପାଞ୍ଚ ବର୍ଷ ହୋଇଗଲେ, ସେ ଯୀଶୁଙ୍କ ପାଖକୁ ଗଲେ କି ଆଲ୍ଲା କିମ୍ବା କୃଷ୍ଣଙ୍କ ନିକଟକୁ ଗଲେ ଏକଥା ସେଲି କି ପିଟର ଜାଣି ନାହାନ୍ତି । ଏତିକି ଜାଣିଛନ୍ତି, ସେ ସଦାପ୍ ଛାଡ଼ି ଚାଲିଗଲେ ।

ତାଙ୍କର ମୃତ୍ୟୁର ଦିବସରେ ଦୁହେଁ ଖୁବ୍ କାନ୍ଦିଥିଲେ । ନଖାଇ ନପିଇ ତାଙ୍କ ଶଯ୍ୟା ଧାରରେ ବସିଥିଲେ । ଆସନ୍ନ ମୃତ୍ୟୁର କାଳିମା ଛାଇ ରହୁ ଭଲି ତାଙ୍କୁ ଗ୍ରାସ କରିବା ପୂର୍ବରୁ ତାଙ୍କ ମୁଖଚନ୍ଦ୍ରମା ଉଜ୍ଜ୍ୱଳ ହୋଇ ଉଠିଥିଲା । କମ୍ପିତ କଣ୍ଠରେ କହିଥିଲେ, ମୋ ଅନ୍ତେ ଏ ମିଶନାରୀ ଦାୟିତ୍ୱ ତୁମ ଉପରେ ନ୍ୟସ୍ତ ହେବ । ଦେଖ, ଶିଶୁ ଈଶ୍ୱରଙ୍କ ଅବତାର, ସେମାନଙ୍କୁ ହେୟଜ୍ଞାନ କରି ଯେଉଁମାନେ ସମାଜଚ୍ୟୁତ କରନ୍ତି ଈଶ୍ୱରଙ୍କ ନିକଟରେ

ସେମାନେ ଅପରାଧୀ, ଜନ୍ମ ଜନ୍ମାନ୍ତରରେ ସେମାନଙ୍କର କ୍ଷମା ନାହିଁ । ଯୀଶୁ ଏବଂ ମରଣୋନ୍ମୁଖୀ ସେହି ମହାମାନବ ଫାଦରଙ୍କ ପାଦ ସ୍ପର୍ଶକରି ସେଲି ଏବଂ ପିଟର ଶପଥ କରିଥିଲେ, ନିଜ କର୍ତ୍ତବ୍ୟରେ ଅଟଳ ରହିବା ନିମନ୍ତେ ।

ପିଟର ଭଲକରି ମନେପକାଇଲା କେବଳ ଖ୍ରୀଷ୍ଟିୟାନ ବ୍ୟତୀତ ଏ ମିଶନାରୀରେ ଅନ୍ୟ କେହି ଶିଶୁ ରହିପାରିବେ ନାହିଁ, ଏକଥା ଭୁଲରେ ସୁଦ୍ଧା ଫାଦର କେବେ କହି-ନଥିଲେ । ତାଛଡ଼ା ସଦ୍ୟଜାତ ଅନାମଧେୟ ଶିଶୁର ଜାତି, ଧର୍ମ ଗୋତ୍ର ବିଷୟରେ କିଏ କେମିତି ଅବଗତ ହେବ ?

ସେଲିର ଏ ଗୋଟିଏ ଫନ୍ଦି, କଣ ନା ଯେଉଁ ଶିଶୁ ଏ ମିଶନାରୀକୁ ଆସିବ ସେ ହେବ ଖ୍ରୀଷ୍ଟିୟାନ । ପିଟରର ବେଳେବେଳେ ସନ୍ଦେହ ହୁଏ, ସେଲି କଣ ଧର୍ମ ପରିବର୍ତ୍ତନ କରାଇବାରେ ଏତେ ଗୁରୁତର ଭୂମିକା ଗ୍ରହଣ କରୁଛି, ନାହିଁକି, କି ସ୍ୱାର୍ଥପାଇଁ, ସେ କଣ କିଛି ଅର୍ଥ ଆଶାକରି ଏ କାମ କରୁଛି ?

ଅନେକ···ପ୍ରାୟତଃ ଆଦିବାସୀ ତଥା ହରିଜନ ଶ୍ରେଣୀଭୁକ୍ତ ପିତାମାତା ନିଜର ଆର୍ଥିକ ଅନାଟନ ହେତୁ ନିଜ ନିଜର ସନ୍ତାନଙ୍କୁ ଏହି ଆଶ୍ରମଟିରେ ଛାଡ଼ିଯାଆନ୍ତି । ଏଥିର ବ୍ୟବସ୍ଥା ମଧ୍ୟ ଫାଦର କରିଥିଲେ । କିନ୍ତୁ କେବେହେଲେ ସେହି ଶିଶୁମାନଙ୍କୁ ଖ୍ରୀଷ୍ଟିୟାନ କରିନେବାର ମନୋବୃତ୍ତି ଫାଦରଙ୍କର ନଥିଲା । ସେ କହୁଥିଲେ ଶିଶୁ ଈଶ୍ୱରଙ୍କର ଅବତାର । ସେମାନଙ୍କର କୌଣସି ଧର୍ମ ବା ଜାତି ଆଉଧାରେନା । ସେମାନେ କେବଳ ଶିଶୁ···ମାନବ-ଶିଶୁ । ଏବେଠାରୁ ତାଙ୍କ ମନ ମଧ୍ୟରେ ଜାତିଭେଦର ସଙ୍କୀର୍ଣ୍ଣତାକୁ ପ୍ରବେଶ କରାଇଲେ ଭବିଷ୍ୟତରେ ଜାତି ପ୍ରଥା ଲୋପ ହେବାରେ ତାଙ୍କର ଜାତି ଧର୍ମ ସମ୍ବନ୍ଧୀୟ ମନୋବୃତ୍ତି ଘୋର ଅନ୍ତରାୟ ସୃଷ୍ଟି କରିବ । ସମଗ୍ର ପୃଥିବୀର ମନୁଷ୍ୟଙ୍କୁ କେବଳ ଗୋଟିଏ ଜାତି ବୋଲି କହିବାର କଳ୍ପନା ଧୂଳିସାତ୍ ହୋଇଯିବ ।

ପିଟର ପରଲୋକଗତ ଫାଦରଙ୍କ ଆଲୋକ ଚିତ୍ର ନିକଟରେ ନତମସ୍ତକ ହୋଇ ପ୍ରଣାମ ଜଣାଇଲା, ଘରେ ପ୍ରବେଶ କଲା ସେଲି ।

ପିଟର ବୁଲି ଅନେଇଲା, କହିଲା ସେଲି, ବସ···କିଛି କଥା ଅଛି ।

ସେଲି କିଛି ଉତ୍କଣ୍ଠା ନଦେଖାଇ ଚେୟାରଟା ଉପରେ ବସିପଡ଼ିଲା । ପିଟର ମଧ୍ୟ । 'ତମେ ଜାଣ, ଯାହା ଦୋକାନରୁ ସାଇମନ ଆମ ପାଇଁ ସଉଦା ଆଣେ ସେ ଜଣେ ଖ୍ରୀଷ୍ଟିୟାନ ?

ହଁ···ସାଇମନଠୁ ଶୁଣିଲି, ଅନେକଥର ସେ ଆସିଛନ୍ତି ଆମ ମିଶନାରୀକୁ । ଚାନ୍ଦା ବି ନେଇଛନ୍ତି ବହୁତ ଥର । ସେଲି ଉତ୍ତର ଦେଲା ।

ତାହା ହେଲେ···ଖ୍ରୀଷ୍ଟିୟାନ କେମିତି ଖ୍ରୀଷ୍ଟିୟାନର ପ୍ରାଣ ନେଉଥିଲା ? ପିଟର ଖୁବ୍ ଉତ୍ତେଜିତ ହୋଇ ପଡ଼ିଲା । ମନେହେଲା ଯେମିତି ତା' ବେକ ମୁହଁ ଫାଟିକି ରକ୍ତ ଉଛୁଳି ପଡ଼ିବ । ଆଉ ଯେଉଁ ଡାକ୍ତର ରାତିଦିନ ଅକ୍ଳାନ୍ତ ପରିଶ୍ରମ କରି ପିଲାଗୁଡ଼ାଙ୍କୁ ବଞ୍ଚାଇଲେ ସେ ହିନ୍ଦୁ । ପ୍ରବଳ ଉତ୍ତେଜନାରେ ଥରି ଥରି ପିଟର କହିଲା ।

ଦୋକାନୀ ତ ସମସ୍ତଙ୍କୁ ବିକ୍ରୀ କରୁଛି, ହିନ୍ଦୁ ଖ୍ରୀଷ୍ଟିୟାନରେ କଣ ଅଛି ?

ବା···କିଛି ନାହିଁ !! ଜଣେ ବ୍ୟବସାୟୀ ଆଖିରେ ତ ସମସ୍ତେ ସମାନ ! ଖ୍ରୀଷ୍ଟିୟାନ ବୋଲି ତ ସେ—ନା···ନାଅନା···ଏ ଅଖାଦ୍ୟ ବୋଲି ସାଇମନକୁ ଫେରାଇ ଦେଲାନି···?

ଓଃ ପିଟର, ତମେ ସବୁବେଳେ ବାଜେକଥା କହି ମୋ ମୁଣ୍ଡ ଖରାପ କରିଦେଉଛ । କେବଳ ମତେ ବୋର୍ କରୁଛ । କଣ ତମର ଇଚ୍ଛା···କେଉଁ ହିନ୍ଦୁ ଝିଅର ପ୍ରେମରେ ପଡ଼ିଲଣି ନା କଣ ?

ସେଲି, ତମେ ଭାବନା ଯେ, କୌଣସି ହିନ୍ଦୁ ଘରର ଝିଅ ଏତେ ସହଜରେ ଜଣେ ଖ୍ରୀଷ୍ଟିୟାନ ପ୍ରେମରେ ପଡ଼ିଯିବ । ତମେ ତାଙ୍କୁ ଘୃଣା କଲେ ସେମାନେ ତମକୁ ଭଲ ପାଇବେ ବୋଲି ଧାରଣା ତମର କେମିତି ହେଉଛି ? ସେଲି ! ନିଜର ଦୃଷ୍ଟିକୋଣ ବଦଳାଅ । ନଚେତ୍ ଫାଦର୍‌ଙ୍କ ଆତ୍ମା ଶାନ୍ତି ପାଇବ ନାହିଁ । ଯେଉଁ ଆତ୍ମବିଶ୍ୱାସ ନେଇ ସେ ଏ ସଂସାରରୁ ବିଦାୟ ନେଲାବେଳେ ତମ ମୋ ହାତରେ ଏ ଅନୁଷ୍ଠାନର ଦାୟିତ୍ୱ ନ୍ୟସ୍ତ କରି ଯାଇଛନ୍ତି ତା'ର କିଛି ମୂଲ୍ୟ ରହିବ ନାହିଁ । ଅସମୟରେ ଏ ଅନୁଷ୍ଠାନ ଭୁଶୁଡ଼ି ପଡ଼ିବ । ପିଟର ଆହୁରି କିଛି କହିଥାନ୍ତା···ସାଇମନ ଆସି କହିଲା, ବାହାରେ ସେଲିକୁ ଜଣେ କିଏ ଅପେକ୍ଷା କରିଛନ୍ତି ।

ସେଲି ଉଠିଗଲା । ପିଟର ସେଇଠାରେ ଚୁପ୍ ହୋଇ ବସିରହିଲା । ସେଲିକୁ ତାର ଆଉ କିଛି କହିବାର ଅଛି ।

ସେଲି ଦଶମିନିଟ ମଧ୍ୟରେ ଫେରିଆସି କହିଲା, ସାର୍‌ଙ୍କ ସଙ୍ଗେ ମତେ ଟୁର୍‌ରେ ଯିବାକୁ ପଡ଼ିବ । ଆଶାକରେ ତମେ ଅସନ୍ତୁଷ୍ଟ ହେବନାହିଁ ।

ପିଟରର ଅସନ୍ତୁଷ୍ଟ ହେବାର କିଛି ନ ଥିଲା, ଘୋଡ଼ା ଯେମିତି ତା ସଇସର ଅଧୀନ ସେଲି ସେହିପରି ତା ଅଫିସରର । ଅନୁଗତ୍ୟ ସ୍ୱୀକାର ନ କଲେ ଚାକିରୀଟା ହାତଛଡ଼ା ହୋଇଯିବାର ଭୟ ।

ମୁଁ କଣ ତମ ଅଫିସରର ବ'ସ୍ ? ମୁଁ ଅନୁମତି ନଦେଲେ ତମେ ଯିବନାହିଁ ବୋଲି ମୁଁ କଣ ଆଶା କରିପାରେ ?

ସେଲି କହିଲା, ତମେ ଖୁବ୍ ଦୁର୍ବୋଧ ହୋଇ ଉଠୁଛ ପିଟର । ତମର ହୋଇଛି କଣ ? ମୋର ସନ୍ଦେହ ସତ୍ୟ ନୁହେଁତ··· !

କେମିତି !! ଏଥର ପିଟର ଅସମ୍ଭବ ଭାବେ ଗମ୍ଭୀର ହୋଇ କହିଲା, ମତେ ଏତେଟା ନେଫରର ଏବଂ ସ୍ୱାର୍ଥପର ଭାବନା । ଏଇ ଅଶ୍ରମରେ ଏକ ଜାରଜ ସନ୍ତାନ ରୂପେ ବଢ଼ିଛି ବୋଲି ତମେ କଣ ଭାବୁଛ ମୋର ବ୍ୟକ୍ତିତ୍ୱ ନାହିଁ । ନିଜର ପିତାମାତାଙ୍କ ବିଷୟରେ ଅଜ୍ଞ ହୋଇଥିଲେ ମଧ୍ୟ ମୁଁ ଅଜ୍ଞାନ ନୁହେଁ ।

ହେଲି ଏଥର ଟିକେ ଭୟ ପାଇଲା—ଖାଇବା ପ୍ରସ୍ତୁତ କରିବାକୁ ସେଘରୁ ଉଠିଗଲା ।

* *

ନିଜ ଅଫିସର ସଙ୍ଗରେ ଟୁର୍‌ରେ ଗୃହବିହୀନ କଟାଇ ଆସିବା ପରେ ହେଲି କେମିତି ଭିନ୍ନ ଜଣାପଡ଼ୁଥିଲା । ଅବସାଦକ୍ଳାନ ଉତ୍‌ଫୁଲ୍ଲିତ ଦେହ ମନ ତାର । ଯେମିତି ଟୁର୍‌ରେ ନଯାଇ ସେ ଯାଇଥିଲା ରେଷ୍ଟ୍‌ରେ । ହେଲିର ହାବଭାବରେ ହୁ ହୁ ପରିବର୍ତ୍ତନ ଲକ୍ଷ୍ୟକରି ପିଟର ମନରେ ସନ୍ଦେହର କୁହୁଡ଼ି ଘନୀଭୂତ ହୋଇଆସେ । ସେ ଅନୁଭବ କରେ ହେଲି କ୍ରମଶଃ ଯେପରି ତା' ନିକଟରୁ ଦୂରେଇ ଯାଉଛି ।

ଉଭୟଙ୍କ ଅଜ୍ଞାତରେ ସେମାନଙ୍କ ମଝିରେ ଗୋଟିଏ ପ୍ରାଚୀର ଗଢ଼ି ଉଠୁଛି । ଦିନ ପରେ ଦିନ ସନ୍ଦେହ, ଘୃଣା ଏବଂ ଅସୂୟାର ଗୋଟିଏ ପରେ ଗୋଟିଏ ଇଟା, ସେଥିରେ ସେ ଦୁଇଜଣ ଯୋଖି ଚାଲିଛନ୍ତି ।

ଦିନେ ଦିନେ ପିଟର ଆଗରୁ ଘରକୁ ଫେରିଆସେ । ସେହି ପଞ୍ଚାଶ ଅଫିସର ପୁଙ୍ଗବଟା ହେଲିକୁ ଆଣି କାର୍‌ରେ ଛାଡ଼ିଦେଇ ଯାଏ । ଖିଲ୍ ଖିଲ୍ ହୋଇ ହସେ ହେଲି । ମନେହୁଏ ତା ହସଟା ଯେମିତି ଛେପଭଳି ପଡ଼ୁଛି ପିଟର ମୁହଁରେ । ସେ ଅସହିଷ୍ଣୁ ହୋଇ ଉଠେ । ମୁଣ୍ଡବାଳକୁ ଟାଣି ଟାଣି ଅଲଗା କରିଦିଏ । କଡ଼ମଡ଼ କରେ ଦାନ୍ତ କପଡ଼

ଏକ ନୀରବ ଆକ୍ରୋଶରେ । ତାକୁ ଲାଗେ ହେଲି ଆସିବାମାତ୍ରେ ସେ ଯେମିତି ତାକୁ ବାଘଭଳି ଝପଟ୍‌କରି ମାଡ଼ି ବସିବ । ଧାରୁଆ ନଖରେ କଣା କରିଦେବ ତାର ଶଙ୍ଖ-ଧବଳ ମର୍ମର ଗ୍ରୀବା । ନିଃଶେଷ କରିଦେବ ତାର ସୁନ୍ଦର ଶରୀରର ସମସ୍ତ ରକ୍ତ ।

ଦିନେ ସେହି ଘଟଣା ଏବଂ ସନ୍ଦେହର ପ୍ରାଚୀର ଉପରେ ପଦାଘାତକରି ପିଟର ନିଜର ପୌରୁଷ ଜାହିର କରିବାକୁ ବସିଲା । ଛୁଡ଼ାହେଲା ଯାଇ ହେଲି ସମ୍ମୁଖରେ । ଚେହେରା ଗମ୍ଭୀର, କଣ୍ଠସ୍ୱର ଦୃପ୍ତ । ଚାଲ ହେଲି ! ଆଜ କୋର୍ଟରେ ରେଜିଷ୍ଟ୍ରି ମ୍ୟାରେଜ କରି ଦେଇ ଆସିବା ।

କିନ୍ତୁ ମୁଁ ତ ମୋର ବିବାହ ସ୍ଥିର କରିସାରିଛି । ହେଲି ଅବଜ୍ଞାରେ ଉତ୍ତର ଦେଲା । ମାନେ···କାହା ସଙ୍ଗେ, ହିନ୍ଦୁ ନା···ଖ୍ରୀଷ୍ଟିୟାନ ? ହେଲିର ଉତ୍ତର ପିଟର

ସେପରି ଜାଣିଥିଲି ଆଗରୁ । ହୋ ହୋ ହସି ଉଠିଲା ସେ । କଣ ଏଇ ଗୃହହୀନ ମଧ୍ୟରେ ମନର ମହଲା ମଜା କରିଦେଲ ? ଅନୁମାନ ଯଦି ମୋର ସତ୍ୟ ହୁଏ, ତେବେ ସେ ଅପହର୍ତ୍ତା ବୋଧହୁଏ ତୁମର ଭାବୀ ପତି । ଯିଏକି ହିନ୍ଦୁ ଏବଂ ଗୃହହୀନ କାଲି ଶଯ୍ୟା ସଙ୍ଗିନୀ ହୋଇ ଅଛି ଯାହାର—

ପିଟର ! ସଂଯତ ହୋଇ କଥାବାର୍ତ୍ତା କର । ହେଲେନର କଣ୍ଠ ଥରି ଉଠିଲା ।

ପିଟର ପୁନର୍ବାର ଠୋ ଠୋ ହୋଇ ହସି ଉଠିଲା, ମୁଁ ଅସଂଯତ ନା ତମେ ? ସେଲି ତମେ ଏତେ ତଳକୁ ଯାଇପାରିଲ !!

ତଳକୁ କଣ ଗଲି ? ଜଣେ ପ୍ରାପ୍ତବୟସ୍କା ତରୁଣୀର ମତାମତ ବ୍ୟକ୍ତ କରିବା କଣ ଅସମ୍ଭବ ? ହେଲେନର ପାଲଟା ପ୍ରଶ୍ନ ।

ଜଣେ ନାରୀ ଏକାଠି କେତେଟା ମତ ପରିପୋଷଣ କରିପାରେ ?

ଖବରଦାର ପିଟର ! ମୋର ଜୀବନର ପ୍ରଶ୍ନ ମତେ ସମାଧାନ କରିବାକୁ ଛାଡ଼ିଦିଅ, ଏଥିରେ ଅଯଥା ହସ୍ତକ୍ଷେପ କରନା । ଏହା ମୁଁ କଦାପି ବରଦାସ୍ତ କରି-ପାରିବିନି । ସେଲି ଦ୍ରୁତ ପଦଚାଳନାରେ ସେ ଘରୁ ନିଷ୍କ୍ରାନ୍ତ ହୋଇଗଲା ।

ପିଟର କିନ୍ତୁ ଚୁପ୍ ଚାପ୍ ବରଦାସ୍ତ କଲା ସେଲିର ଏ ଔଦ୍ଧତ୍ୟ—ଏ ପ୍ରତାରଣା ।

ସରଭନ ପିଟରକୁ କିଛି ନକହି ହେଲେ ସେ ଘରୁ ବିଦାୟ ନେଇ ଚାଲିଯାଇଥିଲି । ଏହା ମଧ୍ୟରେ ଆଉ ଗୋଟିଏ ବସନ୍ତ ଆସି ଚାଲିଗଲାଣି । ପିଟର ଏଥର ଏକା । ସାଇମନ ରାନ୍ଧି ଦେଉଛି, ତାର ସବୁ ଖବର ବୁଝୁଛି । ତଥାପି ପିଟର କ୍ଷୁଧାର୍ତ୍ତ, ତୃଷା ତାର ମେଣ୍ଟୁ ନାହିଁ । ସେ ଏକା ବସେ ବାରଣ୍ଡାରେ, ଏକା ଯାଏ ଅଫିସ । ଫେରେ ଏକା, ଛାତରେ ବାହୁ ଉର୍ଦ୍ଧ୍ୱ ଆକାଶକୁ ଅନାଏ ଅନ୍ୟମନସ୍କ ଭାବରେ । ନିଶ ଦାଢ଼ି ଗୁଡ଼ାକର ପ୍ରାଦୁର୍ଭାବ ଦେଖି ହେଲେ ସେଲୁନ୍‌ରେ ଛିଅର ହୋଇ ଆସେ । ନିଜ ଅଜାଣତରେ ଘର ଟପି ଆଗକୁ ଚଲାଏ । ପୁଣି ସଚେତନ ହୋଇ ଫେରେ ପଛକୁ । ରାସ୍ତା ମଝିରେ ଚାଲେ ବେପରୁଆ ଭାବେ । ଆଗରୁ ବସ୍ ଟାଏ, ପଛରୁ ଟ୍ରକ୍ ଟାଏ ସାଏଁ କରି ଯାଏ ତା' ଦେହରେ ଘଷିହେଲା ଭଳି । ଭୟ ହୁଏ ନାହିଁ ମନରେ ହଠାତ୍ ଦୁର୍ଘଟଣା ଘଟିଯିବ ବୋଲି । ସେଲିର କୌଣସି ଖବର ସେ ଆଉ ରଖିନି । ସେଲିର ଅର୍ଥ ଉପାର୍ଜନର ପନ୍ଥା ବିଷୟରେ ସେ ପରେ ଅବଗତ ହୋଇଥିଲା । ହିନ୍ଦୁମାନଙ୍କୁ କୌଶଳରେ ଭୁଲାଇ ଖ୍ରୀଷ୍ଟିୟାନ କରିବାର କୌଶଳ ତାର ପିଟରର ଆଖିରେ ଧରା ପଡ଼ିଯାଇଥିଲା । ଏହି ଭୂମିକାରେ ଅଜସ୍ର ଅଜସ୍ର ଅର୍ଥ ସେ ଉପାର୍ଜନ କରିଛି । କେବଳ ସେଇ ସାହସରେ

ସେଦିନ ସେ ସବୁ ଗ୍ଲାନି ଭୁଲିଯିବାର ଶକ୍ତି ସଞ୍ଚୟ୍ କରିଥିଲା । ଏହା ଜାଣିବା ପରେ ହେଲେନର ସ୍ମୃତିକୁ ଏକ ବିଷଧର ସର୍ପ ମନେକରି ବାଡ଼େଇ ମାରିଦେଇଥିଲା । ତାର ତିକ୍ତ ଦଂଶନରୁ ମୁକ୍ତ କରିଥିଲା ନିଜକୁ ।

କିନ୍ତୁ ଆଜି ହଠାତ୍ ସବୁ କେମିତି ଓଲଟ ପାଲଟ ହୋଇଗଲା । ଘର ଭିତରେ ସେ ବୋଧହୁଏ ଘୁମେଇ ପଡ଼ିଥିଲା । ସାଲମନ ତାକୁ କୋଟରେ ହଲେଇ ଦେଇ କହିଲା, ସାର୍ ! ସାର୍ ! ହେଲେନ ମ୍ୟାଡାମ୍…ତାର ପାଟି ଝନ୍ନ ବାଜି ଯାଉଥିଲା । ସତେକି ହେଲେନ ଗୋଟିଏ ଭୂତ ।

ପିଟର ନିଜର ଆଖିକୁ ବିଶ୍ୱାସ କରିପାରିଲା ନାହିଁ । ସତରେ ବାରଣ୍ଡାରେ ଛିଡ଼ା ହୋଇଥିଲା ହେଲେନ । ଏକା ନୁହେଁ, କୋଳରେ ଗୋଟିଏ ଶିଶୁ ।

ହେଲେନ ପିଟର ସହିତ ଚକ୍ଷୁ ବିନିମୟ କରିପାରିଲା ନାହିଁ । ପିଟର ଫେରି ଆସିବାକୁ ଉଦ୍ୟତ ହେଲା । ପଛରୁ ଡାକିଲା ହେଲେନ, ପିଟର୍… । ପିଟର୍ ଛିଡ଼ା ହୋଇଗଲା ।

ହେଲେନ ପିଲାଟାକୁ ତଳେ ପକାଇ ଦେଇ ପିଟର ଗୋଡ଼ ଦୁଇଟାକୁ ଧରି ଭୋ ଭୋ ହୋଇ କାନ୍ଦି ଉଠିଲା । ପିଟର କିଂକର୍ତ୍ତବ୍ୟବିମୂଢ଼ ।

ହେଲେନ ତା ପାଦରେ ମୁଣ୍ଡ ପିଟି ପିଟି ଚିତ୍କାର କଲା, ପିଟର ତୁମେ ଦେବତା, ମୁଁ ଘୃଣ୍ୟ କୀଟ, ତେବେବି ନିଜର ଉଦାରତାରେ ମତେ କ୍ଷମାକର ।

ସମସ୍ତ ଗ୍ଲାନି ମନରୁ ପୋଛି ଦେଇ ପିଟର ଚିତ୍କାରିଲା, ଇଏ ହେଲେନ ନୁହେଁ । ଜଣେ ଅସହାୟା ନାରୀ ଯିଏ ପାପକରି କ୍ଷମା ଭିକ୍ଷା କରୁଛି । ଦୋଷୀକୁ ଦଣ୍ଡ ପରିବର୍ତ୍ତେ କ୍ଷମା ଦିଅ । ଏହାତ ଯୀଶୁଙ୍କ ବାଣୀ ।

ପିଟର ହେଲେନ ହାତ ଧରି ତାକୁ ଉଠାଇ କହିଲା, ଭିତରକୁ ଆସ । ବାହାରେ ଲୋକ ଦେଖିଲେ ଭାବିବେ ଏଠାରେ ଡ୍ରାମା ରିହର୍ସାଲ ହେଉଛି ବୋଲି ।

ହେଲେନ କହିଲା, ଏ ସନ୍ତାନକୁ ସେ ସ୍ୱୀକାର କଲେ ନାହିଁ । କହିଲେ ଜାରଜ । ମୁଁ ଖ୍ରୀଷ୍ଟିଆନ, ଭ୍ରଷ୍ଟାଚାରିଣୀ, ସେ କୁଳୀନ ହିନ୍ଦୁ । ତାଙ୍କ ପରିବାରର କୁଳବଧୂ ହେବାର ଯୋଗ୍ୟତା ମୋର ନାହିଁ । ପିଟର, ଆଜି ପର୍ଯ୍ୟନ୍ତ ଏ ଶିଶୁଟିକୁ ଧରି ଘୂରି ବୁଲୁଛି । ଅନେକବାର ଟ୍ରେନ ଲାଇନ୍‌ରେ ଶୁଆଇ ଦେଇ ପୁନର୍ବାର ଟ୍ରେନ ଠିକ୍ ଆସିଲାବେଳକୁ ଉଠାଇ ଆଣିଛି । ବିଷ ଦେଇ ମାରିଦେବା ନିମନ୍ତେ ଇଚ୍ଛାକରି ମଧ୍ୟ ତାକୁ ନିଜର ରକ୍ତ ଦେଇ ବଞ୍ଚାଇ ରଖିଛି ।

ଉଃ…ବନ୍ଦ କର ହେଲେନ ! ଅସହ୍ୟ ବେଦନାରେ ପିଟର ଚିତ୍କାର କଲା, ତମ କଥା ଶୁଣିଲାବେଳକୁ ମୋର ମନେପଡ଼ୁଛି ସେହି ତିନି ଦିନର ଶିଶୁର ଅବସ୍ଥା ! ତା

କଥା କାହିଁକି ଥିଲେ ତନ୍ମୀ କଲନ ? ସ୍ୱାର୍ଥପର ହୋଇ ଉଠିଲ କାହିଁକି ? କାହିଁକି ଭାବିଲ ନାହିଁ, ଠିକ୍ ତମପରି ଅବସ୍ଥାରେ ପଡ଼ି ତା' ମା' ତାକୁ ତ୍ୟାଗକରି ନିରୁଦ୍ଦିଷ୍ଟ ହୋଇ-ଯାଇଛି । ଏ ଶିଶୁର ପରିଚୟ କଣ ? ହିନ୍ଦୁ ନା…ଖ୍ରୀଷ୍ଟିୟାନ୍ ? ଆଶ୍ରମ ତ ତମ ମତରେ ଖ୍ରୀଷ୍ଟିୟାନଙ୍କର ।

ପିଟର ! ପୋଡ଼ା କାଠରେ ଆଉ ଅଗ୍ନି ସଯୋଗ କରନା । ଏ ଶିଶୁକୁ ମିଶନାରୀରେ ଗ୍ରହଣ କରିବ କି ନା…ମତେ ଜବାବ ଦିଅ । ସେଲିର କଣ୍ଠରେ ଆତୁରତା ।

ପିଟର ହସିଲ, ନିର୍ଲିପ୍ତ ଭାବରେ । କହିଲ, କେବଳ ଶିଶୁଟିକୁ ନୁହେଁ, ତମର ଯଦି କିଛି ଆପତ୍ତି ନଥାଏ ତେବେ ତମକୁ ମଧ୍ୟ ଗ୍ରହଣ କରିବାରେ ମୋର ତିଳେମାତ୍ର ଦ୍ୱିଧା ନାହିଁ । ଭଲ ଜମିବ, ଖୁବ୍ ବଢ଼ିଆ ହେବ । ତମେ ଜାରଜ…ମୁଁ ଜାରଜ…, ଏବଂ ଆମର ସନ୍ତାନ ମଧ୍ୟ ଜାରଜ । ପିଟର ପୁଣି ଥରେ ହସିଲ, ଯେପରି ତା' ହସରେ ସେ ଘରର ଛାତ ଭୁଷୁଡ଼ି ପଡ଼ିବ ।

# ଶନିବାରର ସମ୍ବାଦ

ଆଜି ଶନିବାର, ସକାଳୁଆ ସ୍କୁଲ୍ । ରାଇଚରଣ ଖୁବ୍ ଭୋର୍‌ରୁ ଉଠି ପଡ଼ିଲେ । ସାତଟା ବେଳେ ସ୍କୁଲ ଖୋଲିବ । କେବଳ ଶନିବାର ନୁହେଁ, ସବୁଦିନେ ସେ ଉଠନ୍ତି ବ୍ରାହ୍ମ ମୁହୂର୍ତ୍ତିରୁ । ଆବଶ୍ୟକୀୟ ନିତ୍ୟକର୍ମ ସାରି ବାରଣ୍ଡାରେ ଗୋଟାଏ ପିଲାଙ୍କୁ ଧରି ପାଠ ପଢ଼େଇବାକୁ ବସି ଯାଆନ୍ତି ଦିନ ନଅଟା ପର୍ଯ୍ୟନ୍ତ । ତାପରେ ତରବରରେ ଗଣ୍ଡାଏ କଣ ଖାଇଦେଇ ବାହାରନ୍ତି ସ୍କୁଲ । ସ୍କୁଲରେ ପୁଣି ଦିନ ଚାରିଟା ଯାଏ ପିଲାଙ୍କ ପାଖରେ ବକର ବକର ହୋଇ ଅଙ୍କ ସାହିତ୍ୟ ବୁଝାଇବାରେ କଟିଯାଏ । ଚାରିଟାରେ ସ୍କୁଲ୍ ଛୁଟି ।

ଘର ଲେଉଟାଣି ହାଟ ପାଳିଦିନ ପରିବା କିଣି ନେଇ ଆସନ୍ତି, ନଚେତ୍ ଗାଁ ମୁଣ୍ଡ ନିଧି ସାହୁ ଦୋକାନରୁ ବଜାର କରି ଗୋଟିଏ ହାତରେ ପରିବା ବ୍ୟାଗ ଏବଂ ଅନ୍ୟ ହାତରେ ବହି ଖାତା ପୁଳାଏ ଧରି ଘରକୁ ଫେରନ୍ତି । ପରିବା ବ୍ୟାଗଟା ଘରଣୀଙ୍କ ପାଖରେ ପକେଇ ଦେଇ ଗୋଡ଼ହାତ ଧୁଆ ଧୋଇ ହୋଇ ଆର୍ମ ଚେୟାରଟା ଉପରେ ଲମ୍ବଢାଳ ହୋଇ ପଡ଼ି ଯାଆନ୍ତି ଏକ ଲୟରେ ଆକାଶକୁ ଚାହିଁ ଘଣ୍ଟାଏ କାଳ । ବାସ୍, ବଡ଼ି ଭୋରୁ ସନ୍ଧ୍ୟା ପର୍ଯ୍ୟନ୍ତ ଏତିକି ମାତ୍ର ତାଙ୍କର ବିଶ୍ରାମ ।

ସନ୍ଧ୍ୟା ୬ଟାରେ ଆର୍ମ ଚେୟାରଟାକୁ ଭାଙ୍ଗି ଭୁଙ୍ଗି ବାରଣ୍ଡାର ଗୋଟିଏ କଣକୁ ଆଉଜେଇ ଦେଇ ପାଟି କରନ୍ତି ସିମନ୍ତନୀ । ଝିଅକୁ କୁହ ବାରଣ୍ଡାରେ ସପ ପକେଇ ବସିବ, ପିଲାମାନେ ଆସୁଥିବେ, ମୁଁ ସନ୍ଧ୍ୟା ସାରି ଯାଉଛି । ରାଇଚରଣ ଆସିଲା ବେଳକୁ ଝିଅ ପ୍ରଭା ବାରଣ୍ଡାରେ ସପ ପକେଇ ଆଲୁଅ ଜାଳି ବସିଥାଏ । ଜଣକ ପରେ ଜଣେ ପିଲା ମଧ୍ୟ ଆସନ୍ତି । ରାଇଚରଣଙ୍କ ମନରେ ପୁଣି ଯେମିତି ସରସତା ଫେରିଆସେ, ପାଟି ଖଲ ଖଲ ହୁଏ । ଗୁଡ଼ାଏ ଅନର୍ଗଳ ଗପିଗଲା ପରେ ମନରେ ଶାନ୍ତି ଫେରିଆସେ । ଯେଉଁଦିନ ପାଠ ପଢ଼ା ନଥାଏ ତାଙ୍କୁ କିଛି ଭଲ ଲାଗେନା, ମୁଣ୍ଡ ବିନ୍ଧେ, ଆଖି ପୋଡ଼େ, ଜରୁଆ ଜରୁଆ ଲାଗେ । ପିଲାମାନଙ୍କୁ ପାଠ ପଢ଼େଇବାରେ କି ଆନନ୍ଦ ତାଙ୍କର ! ଜନ୍ମ ହେଲା ବେଳେ ଗଣେଶଙ୍କ ଭଳି ଯେମିତି ପେଟରେ ପେଟେ ବିଦ୍ୟାନେଇ ଜନ୍ମ ହୋଇଥିଲେ ସେ ! 'ଘୋଷଣଂ ବିଦ୍ୟା'—ଯେତେ ପଢ଼ିବ ସେତିକି ବିଦ୍ୱାନ ହେବ—ଏହା ତାଙ୍କର ଛାତ୍ରମାନଙ୍କୁ ପ୍ରଥମ ଉପଦେଶ ।

ଏତିକିମାତ୍ର ସନ୍ତୋଷ ତାଙ୍କର ଜୀବନର କର୍ମସୂଚୀ । ସେଥିରେ ମୋଡ଼ ନାହିଁକି ବାଙ୍କ ନାହିଁ, ଖୁବ୍ କ୍ୱଚିତ ସେଥିରେ ବିଘ୍ନ ଘଟେ ଯଦି ପାରିବାରିକ ଅସୁବିଧା ଅକସ୍ମାତ କେବେ ପଡ଼ିଯାଏ । ଯଥା, କାହାର ଦେହ ଖରାପ ଅଥବା ଶିଷ୍ୟମାନଙ୍କ ମଧ୍ୟରେ କେବେ କେବେ ପାରିବାରିକ ମନୋମାଳିନ୍ୟ ଇତ୍ୟାଦି ।

ଏଇ ପାଠ ପଢ଼ା ଉପରେ ଶିଷ୍ୟମାନଙ୍କର ଯେପରି ସବୁଠୁଁ ରାଗ, ଅହେନ୍ତା— ସନ୍ତୃଷ୍ଣୀ ସୁଖ ନ ଦେଖିଲେ ଭଳି ଏଇ ପାଠ ପଢ଼ାଇବାଟାକୁ ସେ ଆଦୌ ସହ୍ୟ କରି ପାରନ୍ତି ନାହିଁ । ଚିଡ଼ିଯାଇ କହନ୍ତି, ନାହିଁକି କାହିଁକି ଏତେ ବକର ବକର ହେଉଛ ? ଯେତିକି ଦରକାର ସେତିକି କର । ସବୁବେଳେ ଖାଲିଟାରେ ବକର ବକର ହୋଇ ଅଯଥା ହାନି କରୁଛ କାହିଁକି ? ଏ ପିଲାମାନେ କଣ ବୁଢ଼ାଦିନେ ତମକୁ ପୋଷିବେ ?

ପିଲାମାନେ ଭବିଷ୍ୟତରେ କଣ କରିବେ ଭାବି ନାହାନ୍ତି ରାଇଚରଣ । କିନ୍ତୁ ସବୁବେଳେ ସେ ମନପ୍ରାଣ ଦେଇ ଚେଷ୍ଟା କରି ଆସିଛନ୍ତି ସେମାନଙ୍କ ଭବିଷ୍ୟତ ଗଢ଼ିବା ପାଇଁ । ହସି ହସି ଶିଷ୍ୟମାନଙ୍କୁ ଉତ୍ତର ଦିଅନ୍ତି, ନଈ ବଢ଼ିରେ ନେବେ ବନ୍ଧ:ଭାଙ୍ଗି ଯିବ ବୋଲି କଣ ନଈରେ ବନ୍ଧ ପକାଯାଏନା ?

× × ×

ରାଇଚରଣ ପୂର୍ବାକାଶକୁ ନିରୀକ୍ଷଣ କଲେ । ସିନ୍ଦୂରା ଫାଟି ଆସୁଥାଏ । ଦିଗନ୍ତରେ ଶେଷ ସୀମା ରେଖାରେ ମୁଠାଏ ଅବିର ଯେପରି ବିଛି ହୋଇ ପଡ଼ିଛି ! ବାଡ଼ିଆଡ଼ ପୋଖରୀ ପାଣିରେ ଗୋଟିଏ ବୁଡ଼ ମାରି ଦେଇ ରାଇଚରଣ ଉଚ୍ଚ ସ୍ୱରରେ ଆବୃତ୍ତି କଲେ —“ଜବା କୁସୁମ ସଙ୍କାଶମ୍ କାଶ୍ୟପେୟଂ ମହା ଦ୍ୟୁତିଂ……… …..”

ଆଜିକାଲି ପ୍ରାତଃ ଭ୍ରମଣ, ଗୀତାପାଠ ଆଦି କେହି କରୁ ନାହାନ୍ତି । ଗାଁର ପିଲାଠୁ ଦାଢ଼ିବୁଢ଼ା ପର୍ଯ୍ୟନ୍ତ ସିନେମା ଗୀତ ବୋଲି ବା ହୁଇସିଲ୍ ମାରି ପୋଖରୀ ପାଣିରେ ପଶନ୍ତି । ଏକାଠିଆ ତାଙ୍କୁ କେମିତି ଲାଜ ମାଡ଼େ । ଛୁଣ୍ଟା ତପଲିକୁ ଅନ୍ୟ ଆଖିରୁ ଲୁଚେଇଲା ପରି ସେ କେହି ନଶୁଣି ପାରିଲା ଭଳି ଶ୍ଳୋକଟାକୁ ଗାଇ ଦିଅନ୍ତି । ପାଖରେ କେହି ନଥିଲା ବେଳେ ସେ ମନ ଖୋଲି ଉଚ୍ଚ ସ୍ୱରରେ ଶ୍ଳୋକ ଆବୃତ୍ତି କରି ସୂର୍ଯ୍ୟ ଉପାସନା କରନ୍ତି । ସେଦିନ ତାଙ୍କର ହୃଦୟ ଶାନ୍ତ ହୋଇଯାଏ । ପ୍ରଫୁଲ୍ଲ ହୋଇଯାଏ । ମନ ଓ ଦେହରେ ଭରିଯାଏ ସେଦିନର କର୍ମ ଚଞ୍ଚଳତା ।

ଏବେ ଶ୍ଳୋକ ଆବୃତ୍ତି କରିବାକୁ ସମସ୍ତେ ପୁରୁଣାକାଳିଆ ଢଙ୍ଗ ମନେ କଲେଣି । ସେଦିନ ନରି ରାଉତ କହିଲା, ଆଜ୍ଞା ! ଖାଲି ପୁରୁଣାକାଳିଆ କଥା ଗୁଡ଼ାକ ଯାବୁଡ଼ି ଧରିଲେ କଣ ହେବ ? ତାର ଅର୍ଥ ବୁଝି କାମ କଲେ ସିନା ମଙ୍ଗଳ ହୁଅନ୍ତା । ସାମାନ୍ୟ

ହସି ରାଇଚରଣ ଉତ୍ତର ଦେଇଥିଲେ, ନଚେତ୍ ... । ଯେ କୌଣସି ବିଷୟରେ ଅର୍ଥ କେହି ଜନ୍ମ ହେଲାବେଳେ ବୁଝି ଆସିନଥାଏ । ତୁମେ କଥା କହି ଶିଖିଲ କାହାଠାରୁ ? ଯଦି ଜଙ୍ଗଲରେ ଜନ୍ମ ହୋଇଥାନ୍ତ ତେବେ ମଣିଷ ଭଳି କଥା ନ କହି ବାଘ ଭାଲୁ ମାଙ୍କଡ଼ଙ୍କ ଭଳି ଶବ୍ଦ କରୁଥାଆନ୍ତ ।

—ହଁ ବୁଝିଲି ଯେ, ଏଇ ଗୁଡ଼ା ଶୁଣୁଛୁକିଏ, ଶିଖାଉଛି ବା କିଏ ?

—ଶିଖିବାକୁ ଯାହାର ଆଗ୍ରହ ଥିବ ସେ ଖାଲି ଖାଲି ଦେଖି ଦେଖି ଶୁଣି ଶୁଣି ଶିଖିଯିବ । ସେଥିପାଇଁ କୌଣସି ସ୍କୁଲର ସାହାଯ୍ୟ ଦରକାର ନାହିଁ । ଅଶିକ୍ଷିତ ନଗରବାଉତ ରାଇଚରଣଙ୍କ ଭଳି ବିଦ୍ୱାନଙ୍କ ସହିତ କେତେବେଳେ ମୁକ୍ତି କରନ୍ତା ? ଖୁଣ୍ଟ ଲାଗିଥିବା ମାଛ କରି ଜାଲଟାକୁ ମରାମତି କରୁ କରୁ କହିଲ, ଆଜ୍ଞା ଏମିତଠ କିଛି ନ ଜାଣି ନ ଶିଖି ଉମର କଟିଗଲାଣି । ଆମ ପିଲା କବଲଙ୍କୁ ଶିଖାନ୍ତୁ । ତାଙ୍କର ଦିନ କାଳ ଆସୁଛି । ସେଇମାନେ ପାରିବେତ ଏ ପୃଥିବୀଟାକୁ ବଦଳେଇ ଦେବେ । ରାଇଚରଣ ଉଦାସ କଣ୍ଠରେ କହିଲେ, ଶିଖିବାଟାତ କିଛି ଜୋରଜବରଦସ୍ତର କଥା ନୁହେଁ ? ସେଥିପାଇଁ ଆଗ୍ରହ ଥିଲେ ସିନା ହେବ !

ତାଙ୍କ ନିଜ ଝିଅ ପ୍ରଭା ତ ତାଙ୍କଠାରୁ କିଛି ଶିଖି ପାରୁନି, ଆଉ ଅନ୍ୟ ପିଲାଏ ଶିଖିବେ କଣ ? ସେଦିନ ସନ୍ଧ୍ୟାରେ ରାଇଚରଣ ନିଜେ ଦେଖିଛନ୍ତି । ଚପଲ ମାଡ଼ି ଯନ୍ତ୍ର ଦେବାକୁ ଯାଉଥିବା ନିଜ ଝିଅକୁ କି ନିର୍ଘାତ ଭାବେ ଗାଳି ବର୍ଷଣ କରୁଥିଲେ ସିମନ୍ତିନୀ, ନିଜର ଏବଂ ନିଜର ଶାଶୁ, ଅଈ ଶାଶୁଙ୍କର ଉଦାହରଣ ଦେଇ । ରାମାୟଣ ମହାଭାରତର ସୀତା, ଦ୍ରୌପଦୀଙ୍କ କଥା ମଧ୍ୟ ବାଦ ପଡ଼ି ନଥିଲ ।

ରାଇଚରଣ ଅବାକ୍ ହୋଇ ଶୁଣିଥିଲେ ସିମନ୍ତିନୀଙ୍କର କଥା । ଯାହାର ମା’ଏତେ ଜ୍ଞାନବତୀ, ତା ଝିଅ ହୋଇ ପ୍ରଭା କେମିତି ଏ ସାମାନ୍ୟ କଥାଟା ଶିଖି ପାରିଲ ନାହିଁ । ନା, ଶିକ୍ଷା କାହା ଉପରେ ଜୋର ଜବରଦସ୍ତି ମାଡ଼ି ଦିଆ ଯାଏ ନାହିଁ । ଏଥିପାଇଁ ଆଗ୍ରହ, ଆନ୍ତରିକତା ଆବଶ୍ୟକ । କିନ୍ତୁ କାହିଁକି ସେ ଆନ୍ତରିକତା ନାହିଁ ପ୍ରଭା ମନରେ ? କାହିଁକି ଆସୁନାହିଁ ଆଗ୍ରହ ?? କୁହା ଖଣ୍ଡେ ପରି କାହାର ହାତ୍ୟାରେ ପ୍ରଭା ଉଡ଼ିଯାଉଛି !! ନିଜର ସ୍ଥିତ ସ୍ଥିର କରି ପାରୁନି, କେଉଁ ଦିଗରୁ ଆସୁଛି ସେ ପବନ, ପୂର୍ବରୁ ନା ପଶ୍ଚିମରୁ, ଉତ୍ତରରୁ ନା ଦକ୍ଷିଣରୁ '?

ପାଣିପାଗ ଯେପରି କାହାର ଅଧିନରେ ନାହିଁ, ପବନର ଗତିକୁ ବି କେହି ନିୟନ୍ତ୍ରଣ କରି ପାରେନା । ପବନର ଗତି ଅନୁସାରେ ମଣିଷ ଚେଲି ହୋଇଯାଏ । କିନ୍ତୁ ଟିକିଏ ଭାବେ ବୁଝିବା ପୂର୍ବରୁ ସେ ଉଡ଼ି ଚାଲିଯାଏ ସମସ୍ତଙ୍କ ଦେଖାଦେଖି । ବୁଝିଲା ବେଳକୁ ସବୁ ସରି ଯାଇଥାଏ । ହାଲୁକା ବୋଲି ସେମାନେ ପବନରେ ଉଡ଼ି ଚାଲିଗଲେ, ଭାରି

ହୋଇଥିଲେ ନିଜ ସ୍ଥିତି ଅଟଳ ରଖିପାରି ଥାଆନ୍ତେ । ପବନରେ ପତର ପ୍ରିନା ଫୁସ୍ କରି ଉଡ଼ିଯାଏ, ପଥର ତ ଉଡ଼ିଯାଏନା । ପ୍ରଭାତ ସତରେ ତାଙ୍କର ପତରଟିଏ ଭଳି ଉଡ଼ି ଯାଉଛୁ । କେଉଁଠି ଲଗିବ ? ରାଇଚରଣ ବ୍ୟସ୍ତ ବିବ୍ରତ ହୋଇ ପଡ଼ନ୍ତି । ତା' ପାଇଁ ନୀରବରେ ମୁଣ୍ଡ ପୋତି ସ୍ତ୍ରିମନ୍ତିନୀଙ୍କ ଠାରୁ ନିର୍ମମ କଟୁ ବାକ୍ୟ ଶୁଣନ୍ତି । ପାଠ ପଢ଼େଇ ଝିଅର ମୁଣ୍ଡଟାକୁ ଖାଇଲଣି ତମେ । କହୁଛୁ ତା'ପାଠ ପଢ଼ା ବନ୍ଦ କର, ସେ ଘରେ ରହୁ, ଘରକରଣା ଶିଖୁ, କଣନା ଝିଅ ମୋର ବିଦ୍ୟାବତୀ ହେବ, ଲୀଳାବତୀ ହେବ ।

ରାଇଚରଣ କିଛି ବୁଝି ପାରନ୍ତି ନାହିଁ । ଖୁବ୍ ଚଞ୍ଚଳ ମନେ ପକାଇ ଯାଆନ୍ତି ପାଠରେ କେଉଁଠାରେ ଲେଖା ହୋଇଛି ଚପଳ ପିଲା ସନ୍ତ୍ରବତୀ ହେବ, ପାଠ ପଢି ପ୍ରଭା ନଷ୍ଟ ହୋଇ ଯାଉଛି ଏକଥା ନିଜେ ବୁଝିବା ଏବଂ ସ୍ତ୍ରିମନ୍ତିନୀଙ୍କୁ ବୁଝାଇବା କି ସେ କଷ୍ଟକର ବ୍ୟାପାର୍ ।

ତାଙ୍କ ସ୍ତ୍ରୀ ହୋଇ ଯଦି ସ୍ତ୍ରିମନ୍ତିନୀ ଅଭିଯୋଗ କରିବେ ପାଠ ପଢି ତାଙ୍କ ଝିଅ ଖରାପ ହୋଇ ଯାଉଛି, ଏକଥା ଶୁଣିଲେ କେଉଁ ବାପା ମା' ଏ ଗାଁର ପିଲାଙ୍କୁ ପାଠ ପଢେଇବା ପାଇଁ ସ୍କୁଲକୁ ପଠାଇବାକୁ ସାହାସ କରିବେ !! ମନେ ମନେ ଆତଙ୍କିତ ହୋଇ ଉଠନ୍ତି ରାଇଚରଣ । କିନ୍ତୁ ସ୍ତ୍ରିମନ୍ତିନୀଙ୍କ ପାଟି ଆପେ ଆପେ ବନ୍ଦ ହୋଇଯିବ ବୋଲି ବାଆଁରେଇ ହୋଇ ବାହାରକୁ ପଳାଇ ଆସନ୍ତି । ଅକସ୍ମାତ ପଦାରୁ ଖସି ଆସିଥିବା କଅଁଳା ବାଛୁରୀ ଭଳି ଛନ ଛନ ହୋଇ ।

ପ୍ରଭା ଏପର୍ଯ୍ୟନ୍ତ ବିଛଣା ଛାଡ଼ିନି । ସବୁଦିନେ ସେ ଉଠେ ବିଳମ୍ବରେ । ସ୍ତ୍ରିମନ୍ତିନୀ ରାଗରେ ତାକୁ ଯେତେ ଆକଟ କହିଲେ ମଧ୍ୟ ତାର ବିଳମ୍ବରେ ଉଠିବା ଅଭ୍ୟାସଟା ଯାଏ ନାହିଁ କୌଣସି ମତେ । ଆଜି ଶନିବାର, ସକାଳ ସାଢ଼େ ଛଅଟାରେ ସ୍କୁଲ ଆରମ୍ଭ । ରାଇଚରଣ ତରତରରେ ଯାଇ ପ୍ରଭାକୁ ହଲାଇ ଉଠାଇ ଦେଲେ । ଶିକ୍ଷକର ଝିଅ ହୋଇ ପ୍ରଭା ଯଦି ବିଳମ୍ବରେ ସ୍କୁଲକୁ ଯିବେ ତେବେ ଅନ୍ୟ ଛାତ୍ର ଛାତ୍ରୀଙ୍କୁ ସେ କେଉଁ ମୁହଁରେ ସମୟାନୁବର୍ତ୍ତିତା ବିଷୟରେ ଶିକ୍ଷା ଦେବେ । ଅଭିଭାବକମାନେ କହିବେ କଣ, ହେଃ... ନିଜ ପିଲାଟାକୁ ବୁଦ୍ଧି ବତାଇ ପାରୁନି, ଅନ୍ୟ ପିଲାଙ୍କୁ କି ଶାସନ କରିବ ? କି ମର୍ମାନ୍ତିକ ଏ ଅପମାନ । ନିଜ ମୁହଁରୁ ଖସେଇ ଥିବା ଛେପ ଯଦି ପୁଣି ଆସି ମୁହଁରେ ପଡ଼େ ତେବେ... ।

ଆଜି ପ୍ରଥମ ପିରିୟଡ଼ ପ୍ରାର୍ଥନା ପରେ ସମ୍ବାଦ ଶିକ୍ଷା । ପିଲାମାନେ ସମ୍ବାଦ ପତ୍ର ପଢ଼ୁଛନ୍ତି କି ନାହିଁ ଜାଣିବା ପାଇଁ ଶନିବାର ଦିନ ସେ ଗୋଟିଏ ସ୍ୱତନ୍ତ୍ର ପିରିଅଡ଼ ଖୋଲିଛନ୍ତି । ଗତ ଶନିବାର ଠାରୁ ଏ ଶନିବାର ପର୍ଯ୍ୟନ୍ତ ପ୍ରତ୍ୟହ ଦୁଇଟି କରି ସମ୍ବାଦ ସେ ଟିପା ଖାତାରେ ଲେଖି ଆଣିବାକୁ କହିଛନ୍ତି, ଜଣକ ପରେ ଜଣକୁ ପଚାରନ୍ତି ।

ସ୍ତବ୍ଧ ହୋଇଗଲେ ରାଇଚରଣ । ଇଏ ସେ କଣ ଦେଖୁଛନ୍ତି ! ପ୍ରଭା !! ପ୍ରଭା ଏ ବୁଦା ମୂଳେ କଣ କରୁଥିଲା !!! ତାଙ୍କ ମୁଣ୍ଡ ଘୂରେଇଦେଲା ଯେପରି । ସେ ଅନୁଭବ କଲେ ବୁଦା ମୂଳରୁ ନାଗସାପଟାଏ ହଠାତ୍ ବାହାରି ଯେମିତି ତାଙ୍କୁ ଦଂଶନ କରିବାକୁ ମାଡ଼ି ଆସୁଛି । ପ୍ରଭା ଆସି ତାଙ୍କୁ ଜାବୁଡ଼ି ଧରି ଭେଁ ଭେଁ ହୋଇ କାନ୍ଦି ଉଠିଲା ।

ରାଇଚରଣ ହତଭମ୍ଭ ହୋଇ ଲକ୍ଷ୍ୟ କଲେ, ପ୍ରଭାର ଫ୍ରକ୍‌ଟା ପଚ୍ଛପଟୁ ଚିରିଯାଇଛି ଲମ୍ବ ଭାବରେ । ପୁଙ୍ଗୁଳା ଦିଶୁଛି ପିଠିଟା । ବାଳଗୁଡ଼ାକ ଆଲୁରୁ ବାଲୁରୁ ହୋଇ ମୁହଁ ସାରା ପଡ଼ିଛି ।

ପ୍ରଭା କାନ୍ଦି କାନ୍ଦି କହିଲା, ଗୋବିନ୍ଦ ତାକୁ ସ୍କୁଲରୁ ଡାକି ଆଣିଲା ଅମ୍ବ ଗୋଟାଇବା ପାଇଁ । ତାପରେ ହଠାତ୍ ଏ ବୁଦା ମୂଳକୁ ଠେଲି ଦେଇ ତା ଉପରେ ବସି ପଡ଼ି ତା ଫ୍ରକ୍‌ଟା ଚିରି ପକାଇଲା । ବାପା ତମେ ଅଜି ସ୍କୁଲରେ ତାକୁ ଏକ ଗୋଡ଼ିଆ ଛିଡ଼ା କରିବ । ଦେଖ, କେମିତି ମୋ ଆଣ୍ଠୁ ଘଷି ଛିଣ୍ଡି ଯାଇଛି । ବୋଉ ମୋତେ ମାରି ପକାଇବ । ପୁଣି ପ୍ରଭା କଇଁ କଇଁ ହୋଇ କାନ୍ଦି ଉଠିଲା ।

ରାଇଚରଣ ସ୍ୱସ୍ତିର ନିଶ୍ୱାସଟାଏ ମାରିଲେ । ପ୍ରଭା ଆଖିରୁ ଲୁହ ପୋଛି ଦେଇ କହିଲେ, ଯା, ମା,…ଘରକୁ ଯାଆ… । ପ୍ରଭା ଚାଲିଗଲା କିନ୍ତୁ ପାଦେ ହଲି ପାରୁନାହାନ୍ତି ରାଇଚରଣ । ମଲା ହାପରି ଅଚଳ ଦେହଟା ପରି ତାଙ୍କ ଦୁଇଗୋଡ଼ ଜୀବନୀ ଶକ୍ତି-ରହିତ । ଗୋବିନ୍ଦ ପ୍ରଭାକୁ ଡାକି ଆଣିଥିଲା ଆମ୍ବ ତୋଟା ଭିତରକୁ କି ଉଦ୍ଦେଶ୍ୟରେ ? ତାକୁ ହତ୍ୟା କରିବାକୁ, ନା ତା ନାରୀତ୍ୱକୁ ? ଦଶ ଏଗାର ବର୍ଷର ଝିଅଟା ପ୍ରଭା । ନାରୀ ଆଉ ହେଲା କେତେବେଳେ ? ଉଃ…ସମଗ୍ର ଜୀବନ କେବଳ ତାଙ୍କର ପ୍ରଶ୍ନ ଆଉ ଉତ୍ତରରେ ଭରି । ଏଇ ଗୋଟିଏ ପ୍ରଶ୍ନର ଉତ୍ତର ସେ ନିରୂପଣ କରି ପାରୁ ନାହାନ୍ତି ।

ଢ଼ଂ ଢ଼ଂ ହୋଇ ସ୍କୁଲ ଘଣ୍ଟାଟା ବାଜି ଉଠିବାର ଶୁଣାଗଲା । ରାଇଚରଣ ନିଜ ପ୍ରଶ୍ନ ପତ୍ରରେ ଫୋପାଡ଼ି ଦେଇ ଚଞ୍ଚଳ ହୋଇ ଉଠିଲେ । ଏଇ ସ୍କୁଲ ଘଣ୍ଟାଟା ଯେମିତି ତାଙ୍କ ହୃଦୟର ସ୍ପନ୍ଦନ । ଘଣ୍ଟାଟା ଶୁଣିବାପରେ ବନ୍ଦ ହୋଇ ଯାଇଥିବା ହୃଦୟର ଧୁକ୍ ଧୁକ୍ ପୁନର୍ବାର ଗତଶୀଳ ହୋଇ ଉଠିଲା । ଆଜି ସମ୍ବାଦ ଶିକ୍ଷା ପିରିଅଡ଼ଟା ଡେରି କରିଦେଲେ ବନ୍ଦ ହୋଇଯିବ ।

ପ୍ରାର୍ଥନା ଶେଷ ହେଲା ।

ସତ୍ୟ ପଥେ ଧର୍ମ ପଥେ ଘେନିଯାଅ ମତେ

ଭସାଅ ପରାଣ ମୋର ତବ ପ୍ରେମ ସ୍ରୋତେ…

ରାଇଚରଣ ତାଚ୍ଛଲ୍ୟରେ ହସିଲେ । ଏଗୁଡ଼ା ଖାଲି ଗତାନୁଗତିକତା, ଜଣକ ପରେ ଜଣକ ମୁହଁକୁ ଗଡ଼ି ଆସିଛି । ପିଲାଦିନେ ପ୍ରାର୍ଥନାରେ ବୋଲୁଥିବା ଏଇ ପଦଟାକୁ କେତେଜଣ ବଡ଼ ହେଲାପରେ ମନେ ରଖିଛନ୍ତି ? ସ୍କୁଲ ପ୍ରାର୍ଥନା, ବୋଲିବା କଥା ବୋଲିଦିଅ । ତା ଅର୍ଥ କିଛି ବୁଝ ବା ନ ବୁଝ । ବୁଝିଲେ ମଧ୍ୟ ଅର୍ଥକୁ ଅନର୍ଥରେ ପରିଣତ କରିବାକୁ କେତେ ବା ସମୟ ଲାଗୁଛି ?

ପ୍ରାର୍ଥନା ବୋଲିସାରି ପିଲାଏ ଏଥର ଝୁଡ଼୍ ଝାଡ଼ କରି ଟିପା ଖାତା କାଢ଼ୁଛନ୍ତି । ଗୋଟିକ ପରେ ଗୋଟିଏ ପିଲା ସମ୍ବାଦ ପଢ଼ିବ । ବୁଝି ପାରୁ ନଥିବା ଶବ୍ଦର ଅର୍ଥ ବତାଇ ଦେବେ ରାଇଚରଣ । ତାଙ୍କର ମଧ୍ୟ କମ୍ ଦାୟିତ୍ୱ ନୁହେଁ । ପ୍ରଥମ ଧାଡ଼ିର ପ୍ରଥମ ପିଲାଟି ହଠାତ୍ ପଚାରି ଦେଲା, ସାର୍, ଧର୍ଷଣ ଅର୍ଥ କଣ ? ରାଇଚରଣ କୌଣସି ଉତ୍ତର ଦେବା ପୂର୍ବରୁ ପଛ ଧାଡ଼ିରୁ ଗୋବିନ୍ଦ କହିଲା, ମୁଁ ଜାଣିଛି, ସାର୍ । ଅରେ, ଧର୍ଷଣ ମାନେ ଜାଣୁନା ?

ଚୁପ୍ କର । ରାଗରେ ଅଗ୍ନିଶର୍ମା ହୋଇଗଲେ ରାଇଚରଣ । ଗୋବିନ୍ଦ ଡରିଲା ନାହିଁ । ପୁନର୍ବାର କହିଲା ଅନୁଚ୍ଚ ସ୍ୱରରେ, ସେଇ ପିଲାଟି ଉଦ୍ଦେଶ୍ୟରେ—ଆରେ ଖବରକାଗଜଟାଯାକ ଖାଲି ଧର୍ଷଣରେ ଭର୍ତ୍ତି, ଅନ୍ତତଃ ଖବରଟା ପୂରା ପଢ଼ିଦେଲେ ଅସଲ ଅର୍ଥଟା ବାହାରି ପଡ଼ିବ ।

ପିଲାଟି ଏଥର ପଢ଼ିବାକୁ ଆରମ୍ଭ କରିଦେଲା । ଜଣେ ବିବାହିତା ମହିଳାଙ୍କ ପ୍ରତି ସାମୂହିକ ଧର୍ଷଣ ! ରାଇଚରଣଙ୍କର ମୁଣ୍ଡ ଘୂରେଇ ଦେଲା । ଆଖିରୁ ଜୁଳୁଜୁଳିଆ ପୋକ ବାହାରି ପଡ଼ିଲା । କି ଅର୍ଥ ବୁଝାଇବେ ସେ ଏ ପିଲାଟାକୁ । ଦିବାଲୋକରେ ହତ୍ୟାକାଣ୍ଡ ! ଅପ୍ରାପ୍ତବୟସ୍କା ବାଳିକା ପ୍ରତି ପାଶବିକ ଅତ୍ୟାଚାର । ଗୋବିନ୍ଦ ହସୁଛି ନଠେଇ ନଠେଇ । ପୋଲିସ କର୍ମଚାରୀଙ୍କ ଅଦ୍ଭୁତ ଠକେଇ । କଳାବଜାରୀଙ୍କ କାରସାଦି । ଚଳନ୍ତା ଟ୍ରେନରେ ଦିନ ଦ୍ୱିପହରରେ ଡକାୟତି ।

ରାଇଚରଣ ସ୍ତବ୍ଧ ହୋଇଯାଇଥିଲେ । ଶନିବାର ଗୁରୁତ୍ୱପୂର୍ଣ୍ଣ ସମ୍ବାଦଗୁଡ଼ାକ ଗୋଟିକ ପରେ ଗୋଟିଏ ଚାବୁକ୍ ମାଡ଼ ଭଳି ତାଙ୍କୁ ଲାଗୁଥିଲା । ଅମୃ ଚୋଟାରେ ଛଡ଼ା ହୋଇ ମୁହୂର୍ତ୍ତିକ ପୂର୍ବରୁ ସେ ଯେଉଁ ପ୍ରଶ୍ନର ଉତ୍ତର ଖୋଜି ପାଉ ନ ଥିଲେ, ସେଗୁଡ଼ିକର ଉତ୍ତର ଯେପରି ସବୁ ଏଇ ସମ୍ବାଦ ପତ୍ରରେ ବାହାରି ପଡ଼ୁଛି । ଅଉ ପିଲାଗୁଡ଼ାକ ଉତ୍ତର ବତାଇ ଦେଇ ଚାବୁକ ଲଗେଇ ତାଙ୍କୁ ପାଠ ପଢ଼ାଉଛନ୍ତି । ଛାତ୍ରଗୁଡ଼ାକ ତାଙ୍କର ଶିକ୍ଷକ ଏବଂ ସେ ନିଜେ ସେମାନଙ୍କର ଛାତ୍ର ପାଲଟି ଯାଇଛନ୍ତି ।

ଆଜି ଯଦି ସେ ଚୋଟା ବାଟ ଦେଇ ଆସି ନ ଥାନ୍ତେ, ଗୋବିନ୍ଦ ବି ଧର୍ଷଣର ମାନେ କଣ, ତାଙ୍କ •ଅପ୍ରାପ୍ତବୟସ୍କା କନ୍ୟାଟିକୁ ଉତ୍ତମ ରୂପେ ଶିଖାଇ ଦେଇ ଥାଆନ୍ତା !

ଆଉ ସେ ସ୍ଥାନରେ ନିଜେ ନ ହୋଇ ଅନ୍ୟ କିଏ ହୋଇଥିଲେ ସମ୍ବାଦପତ୍ରରେ ତାଙ୍କ ନଷ୍ଟହା କନ୍ୟାଟିର କରୁଣ କାହାଣୀ ଏତେ ବଡ଼ ବଡ଼ ଅକ୍ଷରରେ ବାହାର ପଡ଼ିଥାଆନ୍ତା !

ପିଲାଏ ସମ୍ବାଦ ପତ୍ର ଗୃଲହନ୍ତି—

ମନ୍ତ୍ରୀଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ ।

ଏମ୍‌ ଏଲ୍‌ ଏ.ଙ୍କ ଘର ଖାନତଲାସ ।

ଆଉ ଧୈର୍ଯ୍ୟଧରି ପାରିଲେ ନାହିଁ ରାଇଚରଣ । ନିଜେ ଦଉଡ଼ି ଯାଇ ଛୁଟି ଘଣ୍ଟାଟାକୁ ବଜାଇ ଦେଲେ ।

ଢ଼ଂ ଢ଼ଂ ଢ଼ଂ ଢ଼ଂ··· ଖୁବ୍‌ ଜୋର୍‌ରେ ବାଜୁଛି ଘଣ୍ଟାଟା । ଶନିବାରର ସମ୍ବାଦ ବିଚାରା ସେତିକିରେ ଶେଷ ହୋଇଗଲା । ରାଇଚରଣ ଘରମୁହାଁ ହୋଇ ଛୁଟିବାକୁ ଲାଗିଲେ । ତଥାପି ପ୍ରଥମ ଧାଡ଼ିର ପ୍ରଥମ ପିଲାଟା ପ୍ରଶ୍ନ କରୁଥିଲା, ସାର୍‌ ! ପୋଲିସ ତ ଠକଙ୍କୁ ଧରନ୍ତି, ସେ ପୁଣି କେମିତି ଠକେଇ କରୁଥିଲା । କେହି ତ ତାଙ୍କୁ ଧରି ପାରି ନ ଥିବେ ? ସାର୍‌ ଧର୍ଷଣମାନେ କଣ ?

# ପିଲା ଚୋର

ସେଦିନ ଫୁଟବଲ ଖେଳିବାକୁ ଯାଇ ସିଦ୍ଧାର୍ଥ ଆଉ ଘରକୁ ଫେରିଲା ନାହିଁ । ଅପରାହ୍ଣ ଯାଇ ସନ୍ଧ୍ୟା ଆଗତ ହୋଇ ଆସିଲା । ବୃନ୍ଦାବତୀମୂଳେ ସଞ୍ଜବତୀ ଜାଳିଦେଇ ସାରିବା ପରେ ଅନୁପମା ଦେବୀ ଯେତେବେଳେ ଦେଖିଲେ ସିଦ୍ଧାର୍ଥ ଏପର୍ଯ୍ୟନ୍ତ ଫେରିଲା ନାହିଁ, ତାଙ୍କ ମନକୁ ପାପ ଛୁଇଁଲା । କେବେ ସନ୍ଧ୍ୟା ପର୍ଯ୍ୟନ୍ତ ସିଦ୍ଧାର୍ଥ ବାହାରେ ରହେନାହିଁ । ସନ୍ଧ୍ୟା ଉତ୍ତୀର୍ଣ୍ଣ ହୋଇଯିବା ପରେ ମଧ୍ୟ ଆଜି ତାର ନ ଫେରିବାର କାରଣ ସେ ଖୋଜି ପାଇଲେ ନାହିଁ, ସ୍ୱାମୀ ମଧ୍ୟ ତାଙ୍କ କର୍ମକ୍ଷେତ୍ରରୁ ଏପର୍ଯ୍ୟନ୍ତ ଲେଉଟି ନାହାନ୍ତି । ସନ୍ଧ୍ୟା ପୂର୍ବରୁ ଘରକୁ ଯେମିତି ହେଲେ ଲେଉଟି ଆସି ସିଦ୍ଧାର୍ଥ ଗୋଡହାତ ଧୋଇ ପାଠ ପଢ଼ିବସେ । ପାଠପଢ଼ାରେ ତାର ଅସମ୍ଭବ ଝୁଙ୍କ । ସ୍କୁଲର ସବୁ ଶିକ୍ଷକଙ୍କର ସେ ପ୍ରିୟ ଛାତ୍ର । ସିଦ୍ଧାର୍ଥ ଯେ ଦିନେ ସମାଜରେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି ରୂପେ ଅଜସ୍ର ସମ୍ମାନର ଅଧିକାରୀ ହେବ ଏ ବିଷୟରେ ଅମରେଶ ବାବୁ ଦୃଢ଼ନିଶ୍ଚିତ ଥିଲେ । ଏକମାତ୍ର ପୁତ୍ରର ଯତ୍ନରେ ନିଜର ସମସ୍ତ ସମୟ ନିୟୋଜିତ କରି ଅନୁପମା ସଂସାରର ଯାବତୀୟ ଦୁଃଖ ପାଶୋରି ଦେଉଥିଲେ ।

ଘଣ୍ଟାରେ ସାତଟା ବାଜିଲା । ବାହାର ଅନ୍ଧକାର ପୋଡ଼ା ଅଙ୍ଗାର ଭଳି କଳା କଟିମିଟି ଦେଖାଯାଉଥିଲା । ପବନ ଅପେକ୍ଷାକୃତ ଜୋରରେ ବହିବା ଭଳି ମନେ ହେଉଥିଲା । ଆକାଶରେ ଗାଢ଼ କଳାରଙ୍ଗର ବାଦଲ ଘୋଟି ଆସୁଥିଲା । କେମିତି ଛମ୍ ଛମ୍ ଭାବ । ବର୍ଷା ହେବ ବୋଧହୁଏ !! କୁଆଡ଼େ ଗଲା ସିଦ୍ଧାର୍ଥ !!! ଅନୁପମା ଦେବୀଙ୍କ ହୃଦୟରେ ଦୁଃଖ, ବିଷାଦ ଏବଂ ଆଶଙ୍କା ଭରି ଆସିଲା । ହାତ ଗୋଡ଼ କେମିତି ଅବଶ ଜଣାଗଲା । ସ୍ୱାମୀ ଏପର୍ଯ୍ୟନ୍ତ ଫେରି ନାହାନ୍ତି । ଏକାକିଆ ସ୍ତ୍ରୀ ଲୋକଟିଏ ହୋଇ କଣ ସେ କରିବେ ? କାହାକୁ ପଚାରିବେ ସିଦ୍ଧାର୍ଥ ସମ୍ବନ୍ଧରେ ? କେଉଁଯାଗାଟା ବା ସେ ଦେଖିଛନ୍ତି ଏ ସହରରେ !!

ବାହାରେ ସାଇକେଲ ରଖିବାର ଶବ୍ଦ ହେଲା । ଅନୁପମା ଉର୍ଦ୍ଧ୍ୱଶ୍ୱାସରେ ବାହାରକୁ ଦୌଡ଼ିଲେ । ସ୍ୱାମୀ ବାରଣ୍ଡା ଉପରକୁ ସାଇକେଲ ଉଠାଉଛନ୍ତି । ସେ ପାଗଳୀଙ୍କ ଭଳି ଚିତ୍କାର କଲେ, ଆସନା···ସେଇଠୁ ଫେରିଯାଅ···ମୋ ଜୀବନ ବାହାରିଯିବ ··ମୁଁ ମରିଯିବ ।

ଅମରେଶବାବୁ ସ୍ତ୍ରୀଙ୍କର ଏତାଦୃଶ ହାବଭାବରୁ କିଛି ବୁଝି ପାରିଲେ ନାହିଁ । ଜିଜ୍ଞାସୁ ନୟନରେ ସେ କେବଳ ଆଲୁଳାୟିତ—କେଶା, ବିବ୍ରତା ଅନୁପମା ଦେବୀଙ୍କ ମୁହଁକୁ ଚାହିଁ ରହିଲେ ।

ଅନୁପମାଙ୍କ ମୁଖରୁ ବାକ୍ୟ ସ୍ଫୁରୁ ନ ଥାଏ । ନିଜର ସମସ୍ତ ଶକ୍ତି ସଞ୍ଚୟ କରି ସେ କେବଳ କହିଲେ, ମୋ ସିଦ୍ଧାର୍ଥ ଘରକୁ ଫେରିନାହିଁ ।

ବର୍ଷାହେଲେ ବୋଧହୁଏ......ଅମରେଶ ବାବୁ ଘଣ୍ଟାକୁ ଚାହିଁଲେ, ସାଢ଼େ ନଅଟା । ଆଶ୍ଚର୍ଯ୍ୟ......ସିଦ୍ଧାର୍ଥ ଏତେବେଳଯାଏ ଘରକୁ ଫେରିନି ! ତେବେ ସେ ଗଲା କୁଆଡ଼େ ?

ଅଗତ୍ୟା ଅନୁପମା ଦେବୀଙ୍କୁ କିଛି ନକହି ସେଇଠାରୁ ସାଇକେଲ ଫେରାଇଲେ ସେ । ବର୍ଷା ଏଥର ଭୀଷଣ ମୂର୍ତ୍ତି ଧାରଣ କରି ମୂଷଳ ଧାରାରେ ବର୍ଷିବାକୁ ଲାଗିଲା । ସତେକି ଆକାଶର ସବୁଯାକ ମେଘ ଆଜି ଅକାଡ଼ି ହୋଇ ପଡ଼ିବ । କି ଦୁର୍ଯ୍ୟୋଗ କାଳରାତ୍ରି !

ଅମରେଶ ବାବୁଙ୍କର ଦେହାଙ୍ଗ ଓଦା ହୋଇ ପାଣି ତାଙ୍କୁ ଗଡ଼ି ପଡ଼ୁଛି । ସେ କଥା ସେ ଅନୁଭବ କରିପାରୁ ନାହାନ୍ତି । ରାସ୍ତାର ବତୀ ସବୁ ବିଜୁଳି ବିଭ୍ରାଟ ଯୋଗୁ ଲିଭି ଯାଇଛି । କେବଳ ଆକାଶର ସାମୟିକ ବିଜୁଳି ଝଲକରେ ଚିତ୍ରକାଳିତ ରାସ୍ତା ଠଉରେଇ ସେ ଅମୁହାଁ ଭାବରେ ସାଇକେଲ ଗଡାଇ ଚାଲିଛନ୍ତି । ଆଖି ଆଗରେ ସିଦ୍ଧାର୍ଥର ମୁହଁ ବାରମ୍ବାର ଦିଶିଯାଉଛି । ସତେକି ବିକଳ ହୋଇ କାନ୍ଦି କାନ୍ଦି ବାପା...ବାପା...ବୋଲି ଚିତ୍କାର କରି ଚାଲିଛି ।

ଓଃ...କି...ବର୍ଷା ? ଏତେ ରାତିରେ କେଉଁଠି ଥିବ ତାଙ୍କ ହୃଦୟର ଏକମାତ୍ର ଆଶ୍ୱାସନା, ସିଦ୍ଧାର୍ଥ !! କେଉଁଠାରେ ତାକୁ ଯାଇ ଖୋଜିବେ ଏ ବର୍ଷା ରାତିର ନିବିଡ଼ ଅନ୍ଧକାରରେ !! ସିଦ୍ଧାର୍ଥକୁ ସତରେ କଣ ଆଉ ସେ ପାଇବେ ନାହିଁ ? ଶୁଣି ପାରିବେ ନାହିଁ ଆଉ ତାର କୋମଳ ନରମ କଣ୍ଠର ଡାକ ?? ସିଦ୍ଧାର୍ଥର ସୁନ୍ଦର ମୁହଁ ଶରଦିନ ପାଇଁ କଣ ତାଙ୍କ ଦୃଷ୍ଟି ଆଢ଼ୁଆଳରେ ରହିଯିବ ??? ସିଦ୍ଧାର୍ଥରେ ... ! ତୁ ଏ ଅସମୟରେ କୁଆଡ଼େ ଗଲୁ ? ଅମରେଶ ବାବୁ ସାଇକେଲ ହ୍ୟାଣ୍ଡେଲ ଉପରେ ବାରମ୍ବାର ମୁଣ୍ଡ ପିଟିବାକୁ ଲାଗିଲେ ଦୁଃଖରେ ମ୍ରିୟମାଣ ହୋଇ ।

× × ×

ଫୁଟବଲ ଖେଳ ସାରି ସିଦ୍ଧାର୍ଥ ଘରକୁ ଫେରି ଆସୁଥିଲା । ଆକାଶରେ ଭୀଷଣ ବର୍ଷା ଉଠାଇଛି । ରହି ରହି ବିଜୁଳି ମାରୁଛି । ସିଦ୍ଧାର୍ଥ ଦଉଡ଼ିବାକୁ ବସିଥିଲା । ହଠାତ୍ ତାକୁ କିଏ ଡାକିଲା ଯେପରି, ଏ ପିଲା ...... ସିଦ୍ଧାର୍ଥ ଦେଖିଲା ଅଦୂରରେ ଥିବା ଏକ ବତୀଖୁଣ୍ଟ ନିକଟରେ ଜଣେ ଲୋକ ଛିଡ଼ାହୋଇ ତାକୁ ହାତ ଠାରି ଡାକୁଛି । ଲୋକଟିକୁ ଆଗରୁ କେଉଁଠି ଦେଖିଲା ପରି ତାର ମନେ ହେଲା ନାହିଁ । ସିଦ୍ଧାର୍ଥ ଦୋ ଦୋ ପାଞ୍ଚ ହୋଇ ଲୋକଟିର ପାଖକୁ ଗଲା । ରାସ୍ତା ନିର୍ଜନ । ଖୁବ୍ ଜୋରରେ ପବନ ବହିଲାଣି । ବର୍ଷା ଆଗତ ପ୍ରାୟ । ଖେଳ ପଡ଼ିଆଟା ସମ୍ପୂର୍ଣ୍ଣ ନିସ୍ତବ୍ଧ ।

ସିଦ୍ଧାର୍ଥ ଦେଖିଲ ଲୋକଟାର ମୁହଁରେ ବେଜାଏ ଦାଢ଼ି । ବେକରେ ରୁମାଲ ଗୁଡ଼ାଇ ବାନ୍ଧିଛି । ମୁଣ୍ଡରେ ପଟକା । ପଞ୍ଜାବୀ ଲୋକଟିଏ ଭଳି ଦେଖା ଯାଉଛି ।

ବର୍ଷା ହେଲା ଏଥର । ଲୋକଟି ତାକୁ କଟମଟ କରି ଅନାଇ ପଚାରିଲା, ଏ··· ତୋ ଘର କୁଆଡ଼େ ? ସିଦ୍ଧାର୍ଥ ଭୁଲିଗଲା ତାକୁ ହାତ ବଢ଼ାଇ ଦେଖାଇବାକୁ ଯାଉଥିଲା, ହଠାତ୍ ସେ ଅନୁଭବ କଲା, ଲୋକଟା ତାର ରୁମାଲକୁ ତା ନାକ ପାଖରେ ମାଡ଼ି ଧରିଛି । ସେ ଛଟିପିଟି ହେଲା ଖସି ପଳେଇ ଯିବାକୁ । କିନ୍ତୁ କଣ ଯେ ତାର ହୋଇଗଲା···ସେ ତା ପରେ ଆଉ କିଛି ଜାଣି ପାରିଲା ନାହିଁ ।

ରମଜାନ୍ ଦେଖିଲା, ପିଲାଟା ବେହୋସ ହୋଇ ଯାଇଛି । ଆଯାଡ଼ ଶରୀର ତାର ଭୂଇଁରେ ଲୋଟି ପଡ଼ିଲା । କି ସୁନ୍ଦର ଚେହେରା ପିଲାଟିର ! ଉଜ୍ଜ୍ୱଳ ଗୌରବର୍ଣ୍ଣ ଶରୀର । ମୁଣ୍ଡରେ ଘେଞ୍ଚାଏ କୁଞ୍ଚୁକୁଞ୍ଚିଆ ବାଳ । ତୀକ୍ଷ୍ଣ ନାକ । ସରୁ ରକ୍ତିମ ଅଧର । ରମଜାନ ତା ଜୀବନରେ ଏପରି ଖୁବ୍ କମ୍ ପିଲା ଦେଖିଛି । ଏଟାର ବାର ବର୍ଷର ଖାସା ଛୁଆଟାଏ । ରମଜାନ୍ ଏଠାକୁ କାହାକୁ ଦେବ ନାହିଁ । ନିଜ ପାଖରେ ରଖିବ । ଚାରିଆଡ଼କୁ ସତର୍କ ଦୃଷ୍ଟି ଦେଇ ରମଜାନ କାନ୍ଧରେ ପିଲାଟାକୁ ପକାଇ ଗୋଟାଏ ଚଦର ଘୋଡ଼ିହୋଇ ପଡ଼ିଲା । ଲମ୍ବା ଲମ୍ବା ପାହୁଣ୍ଡ ପକାଇ ରାସ୍ତାର କପଟିଆ ବାଗକୁ ଚାଲିଲା ସେ ।

ଏକ ନିଶ୍ୱାସରେ ଅନେକ ଗୁଡ଼ାଏ ପଥ ଅତିକ୍ରମ କଲା ପରେ ସେ ଯାଇ ଷ୍ଟେସନ ବଜାର ସେପଟେ ଥିବା ଏକ ଅପ୍ରଶସ୍ତ ଅନ୍ଧାରୁଆ ଗଳିରେ ପହଞ୍ଚିଲା । ଗରିବ ରେକ୍ସା ବାଲାଙ୍କ ବସ୍ତି । ଲଗାତକୁ ଲଗାତ ଲଗି ଲଗି ଅନେକ ଗୁଡ଼ିଏ ମାଟି ଘର । ଘର ଭିତରକୁ ଯିବାପାଇଁ ମୁଣ୍ଡ ବାଜିଲା ଭଳି ଛୋଟ ଛୋଟ ଦୁଆର । ବର୍ଷା ପାଣି ଚାଳରୁ ନିଗିଡ଼ି ତଳେ ଥିବା ନାଳରେ ଆସି ପଡ଼ୁଛି । ବିଜୁଳି ମାରି ମଝିରେ ମଝିରେ ଗଳି ରାସ୍ତାଟା ଆଲୋକିତ ହୋଇ ଯାଉଛି । ସବୁ ଘରର ଦୁଆର ବନ୍ଦ । ଅବଶେଷରେ ସେ ଗୋଟିଏ ଘରର ଦୁଆର ମୁହଁରେ ଛିଡ଼ାହୋଇ କବାଟ ବାଡ଼େଇ ଡାକିଲା ··· ଚନ୍ନାମା ··· ଚନ୍ନାମା ···

ଦୁଆର ଖୋଲିଗଲା । ଯେ ଦୁଆର ଖୋଲିଥିଲା, ସେ ଚନ୍ନାମା । ରମଜାନ୍‌କୁ ଦେଖି ଚନ୍ନାମାର ସର୍ବାଙ୍ଗ ଥରି ଉଠିଲା । ପୁଣି କାହାଘର ଆଜି ଉଜାଡ଼ି କରି ଆସିଛି ରମଜାନ୍ ।

ଉଠ୍ ······ହଟ୍‌ଯା ସାମନାରୁ, ଚିତ୍କାର କଲା ରମଜାନ୍ । ଚନ୍ନାମା ଦରଜା କଡ଼କୁ ଘୁଞ୍ଚିଗଲା । ରମଜାନ୍ ଘରେ ପ୍ରବେଶ କଲା । ଚନ୍ନାମା ଦରଜା ବନ୍ଦ କରିଦେଲା ।

ରମଜାନ୍ ସିଦ୍ଧାର୍ଥକୁ ଖଟ ଉପରେ ଶୁଆଇ ଦେଇ କହିଲା–ଖାନା ଆଣ୍, ବହୁତ ଭୁକ୍ ଲାଗୁଛି ।

ଚନ୍ଦାମା ସେ ପର୍ଯ୍ୟନ୍ତ ନିର୍ନିମେଷ ନୟନରେ ସିଦ୍ଧାର୍ଥକୁ ଗୃହିଁଥିଲା ।

—ଅବେ ଶାଲା ! ଦେଖ୍ତା କ୍ୟା···? ଖାନା ଲଓ ।

ଚନ୍ଦାମା ଯେପରି ସବତ୍ ଫେରି ଧାଇଁଲା । ଏ ଘରକୁ ଲଗି ଆଉ ଗୋଟିଏ ଷ୍ଟୋର ଘରକୁ ସେ ପଶିଗଲା ଖାନା ଆଣିବା ପାଇଁ ।

ରମଜାନ୍ ପିଲ୍‌ଚୋର । ସହରର ବିଭିନ୍ନ ସ୍ଥାନରୁ ସେ ସୁଯୋଗ ଦେଖି ପିଲା ଚୋରି କରି ଆଣେ । ପରେ ବେହୋସ କରି ପିଲାକୁ ଲୁଚାଇ ରଖେ । ତାର ଖଦ୍ଦାର ଆସି ଠିକ୍ ବେଳରେ ପହଞ୍ଚେ । ଉଚିତ୍ ଦର କଷି ସେ ପିଲାକୁ ବିକ୍ରି କରିଦିଏ କେହି ତାକୁ ସନ୍ଦେହ କରିବା ପୂର୍ବରୁ ।

ଦିନବେଳେ ସେ ରେକ୍‌ସା ଚଳାଏ । ରେକ୍‌ସା ଚଢ଼ାଳିଙ୍କୁ କେବେ ସେ ପଇସା ପାଇଁ ହଇରାଣ କରେନାହିଁ । ଝଗଡ଼ା ଝାଟ ଲଗାଏ ନାହିଁ । ଯିଏ ଯାହା ଦେଲା ଖୁସିରେ ପକେଟରେ ପକାଏ । ସମସ୍ତେ ଜାଣନ୍ତି ରମଜାନ୍ ସହରର ସଚ୍ଚୋଟ, ଗରିବ ରେକ୍‌ସାବାଲା ।

ବାହାରପଟୁ ଦରଜା ବାଡ଼େଇବାର ଶବ୍ଦ ହେଲା । ରମଜାନ୍ ସିଦ୍ଧାର୍ଥକୁ ଶୂନ୍ୟେ ଶୂନ୍ୟେ ଟେକି ନେଲା ସେ ଷ୍ଟୋର ଘରଟାକୁ । ସେଇଠାରେ ତାକୁ ଶୁଆଇଦେଇ ସେ ପୁଣି ଫେରି ଆସି କବାଟ ଖୋଲିଲା । କହିଲା, ହଜୁର ! ଆଜ୍ଞା କିଛି ମାଲ ନାହିଁ । ପୋଲିସ ମତେ ସନ୍ଦେହ କରୁଛି । ଆପଣ ଫେରି ଯାଆନ୍ତୁ । ଏତିକି କହି ସେ ଦରଜା ବନ୍ଦ କରିଦେଲା ।

ରମଜାନ୍‌ର ଉଦ୍ଦେଶ୍ୟ ଥିଲା ଆଜି ରାତିଟା କୌଣସି ପ୍ରକାରେ ବିତିଗଲେ କାଲି ସେ ସିଦ୍ଧାର୍ଥକୁ ସଙ୍ଗରେ ଧରି ଏ ସହର ତ୍ୟାଗ କରିବ । କପରି ଭାବରେ ସେ ସହର ତ୍ୟାଗ କରିବ ତାର ମଧ୍ୟ ଏକ ସୁଚିନ୍ତିତ ଯୋଜନା ସେ ତିଆରି କରି ସାରିଥିଲା । ଅନ୍ୟାନ୍ୟ ଜିନିଷପତ୍ର ସହ ଚନ୍ଦାମା ପିଲାଟାକୁ ଧରି ସେ ରେକ୍‌ସାରେ ବସିବ । ସେ ତା ପରେ ରେକ୍‌ସା ବାହି ସହର ଛାଡ଼ି ପଳାଇବ । କେହି ସନ୍ଦେହ କରିବେ ନାହିଁ । ଚବିଶ ଘଣ୍ଟା ମଧ୍ୟରେ ସେ ଆଉ ଚନ୍ଦାମା ମେଡିକାଲକୁ ଏକ ରୋଗୀ ନେଲାଭଳି ସିଦ୍ଧାର୍ଥକୁ ନେଇ ଚମ୍ପଟ କରିବେ ।

ଚନ୍ଦାମା ଷ୍ଟୋର ଘରଟି ଭିତରେ ଚୂଲି ଜାଳି ରୁଟି ସେକୁଥିଲା । ପାଖରେ ତାର ପିଲାଟା ଶୋଇଛି । ତା ହାତ ମଝିରେ ମଝିରେ ହଲିଯାଇ ପୁଣି ବନ୍ଦ ହୋଇ ଯାଉଛି । ପିଲାଟାକୁ ଆଣି ଏ ଘରେ ଶୁଆଇ ଦେଇ ଯିବାର ଉଦ୍ଦେଶ୍ୟଟା ସେ ଭଲରୂପେ ବୁଝି

ପାରିଥିଲା । ରମଜାନ୍ ଏ ପିଲାକୁ କାହାକୁ ଦବାକୁ ଗୃହେଁ ନାହିଁ । ତା ହେଲେ ପିଲାଟାକୁ ସେ କରିବ କ'ଣ ? ଚନ୍ଦାମାର ହୃଦୟ ହା ହାକାର କରି ଉଠିଲା । ଆହା, କି ସୁନ୍ଦର ଗ୍ରେଟ ପିଲାଟାଏ ! ଆରାମରେ ଘରେ ଖାଇ ପିଇ ମା' କୋଲରେ ନିଦ୍ରା ଯାଇଥାଆନ୍ତା । କି ଗ୍ରହରାବି ହୋଇ କେଉଁଠାରେ ଆସି ପଡ଼ିଛି । ଚନ୍ଦାମା ଠିକ୍ କଲା ଯେ କୌଣସି ପ୍ରକାରେ ହେଉ ପିଲାଟାକୁ ସେ ନିଶ୍ଚୟ ରକ୍ଷା କରିବ । ନିଜର ଜୀବନ ବିନିମୟରେ ଙ୍କମା ଦେବ ତାକୁ ତାର ଶୋକସନ୍ତପ୍ତ ପିତାମାତାଙ୍କ ନିକଟରେ ।

ଆଳିରେ ରୁଟି ତରକାରୀ ସଜାଇ ସେ ରମଜାନ ନିକଟରେ ଥୋଇବାକୁ ଗଲା । ଖଣ୍ଡିଆ ଦଉଡ଼ିଆଁ ଖଟ ଉପରେ ଗୋଡ଼ହାତ ଲମ୍ବାଇ ଚିତ୍ ହୋଇ ଶୋଇଛି ରମଜାନ । ମୁହଁଟା ଗୋଟାଏ ରାକ୍ଷସର ମୁହଁପରି ଭୟଙ୍କର ଦେଖାଯାଉଛି । ହାତ ଦୁଇଟା ଖଟର ଦୁଇପାଖ ତଳକୁ ଲମ୍ବି ଝୁଲି ପଡ଼ିଛି । ମନେ ମନେ କି ଏକ ଯୋଜନା ଯେପରି ପ୍ରସ୍ତୁତ କରୁଛି ସେ । ଚନ୍ଦାମା ତାକୁ ଉଠିବାକୁ କହି ତା ଆଗରେ ଥାଳି ଥୋଇଲା । ରମଜାନ ତାର ସ୍ୱାମୀ କହିଲେ ଠିକ୍ ହେଉ ନାହିଁ । ପ୍ଲାଟଫର୍ମରେ ଯେତେବେଳେ ଚନ୍ଦାମା ଖାଇବାକୁ ନ ପାଇ ତାଟିଆ ଧରି ପଇସା ମାଗୁଥିଲା, ରମଜାନ ତାକୁ ଧରି ଆଣି ଆଶ୍ରୟ ଦେଇଥିଲା ନିଜ ଘରେ । ସେତେବେଳେ ରମଜାନ୍ ତା ସମ୍ମୁଖରେ ଦେବତା ଭଳି ପ୍ରତୀୟମାନ ହେଉଥିଲା । କିନ୍ତୁ ପରେ ଯେତେବେଳେ ସେ ରମଜାନର ସ୍ୱରୂପ ଜାଣିଲା··· ଆଉ ଉପାୟ ନ ଥିଲା । ଛୁରୀ ଦେଖାଇ ତା ପାଟି ବନ୍ଦ କରି ତାର ପଳାଇଯିବାର ବାଟକୁ ରୁଦ୍ଧ କରି ଦେଇଥିଲା ରମଜାନ୍ । ଖସିଯିବାର ବାଟ ଖୋଜି ମରିବା ଅପେକ୍ଷା ଜୀବନଟା ତାକୁ ବେଶୀ ମୂଲ୍ୟବାନ୍ ମନେ ହୋଇଥିଲା । କିନ୍ତୁ···ଆଜି ଚନ୍ଦାମା ଭାବିଲା, ସେମାନଙ୍କ ମଧ୍ୟରୁ ଯିଏ ହେଲେ ଜଣେ ମରିବାକୁ ବାଧ୍ୟ, ସେ ନଚେତ୍ ରମଜାନ୍ ତଥାପି ପିଲାଟାକୁ ସେ ନିଶ୍ଚୟ ରକ୍ଷା କରିବ ।

ଚନ୍ଦାମା ପୁନର୍ବାର ଗ୍ରେଟ ଘରଟିକୁ ଫେରି ଆସିଲା । ବହୁ ଦିନରୁ ଲୁଚାଇ ରଖିଥିବା ବିଷପୁଡ଼ିଆଟା ସେ ଖୁବ୍ ସନ୍ତର୍ପଣରେ ଗୋଟିଏ ଅଳିଆ ଭର୍ତ୍ତି ହୋଇଥିବା କାଗଜ ଖୋଳରୁ ବାହାର କରିଆଣିଲା । ଗୋଟାଏ ମଦ ବୋତଲର ଠିପି ଖୋଲି ସବୁଯାକ ସେଥିରେ ଢାଳି ଦେଇ ଠିପି ବନ୍ଦ କରିଦେଲା ।

ବାହାରେ ଭୀଷଣ ବର୍ଷା ହେଉଛି । ପିଲାଟିର ଚେତା ବୋଧହୁଏ ଫେରି ଆସିଲା । ହାତଗୋଡ଼ ହଲାଇ ସେ ଉଠି ବସିବାକୁ ଚେଷ୍ଟା କଲା । ଚନ୍ଦାମାର ଦେହ ଥରି ଉଠିଲା । ଯେତେ ବିଳମ୍ବ ହେବ ସେତେ ବିପଦ । ସେ ଦଉଡ଼ି ଯାଇ ପିଲାଟିର ମୁହଁରେ ପାଣି ଛିଟିଲା । ଚୁପ୍‌ଚୁପ୍ ତା' କାନରେ କହିଲା, ଭୟ କରନା ତୋ ମା' ପାଖରେ ତତେ ମୁଁ ଛାଡ଼ିଦେବି ।

ଚନ୍ଦାମା ଏତେ ବ୍ୟସ୍ତ ହୋଇ ପଡ଼ିଲା ଯେ ନିଜର ଚାଉଳ କଟା ସେ ପାଶୋରିଲେ । ବିଷ ମିଶାଇଥିବା ମଦ ବୋତଲଟା ଟାଣିଲା ନେଇ ରମଜାନ୍ ନିକଟରେ ଥୋଇଦେଲା ।

ରମଜାନ୍‌ର ଖାଇବା ସରିଥିଲା । ମଦ ବୋତଲର ଠିପିଟା ଫିଟାଇ ସେ ଢକ୍ ଢକ୍ କରି ପୂରା ବୋତଲଟା ନିଃଶେଷ କରିଦେଇ ଧଡ଼୍‌ଧଡ଼ିକା ଖଟଟା ଉପରେ ମୁର୍ଦ୍ଦାର ଭଳି ପଡ଼ିଗଲା ।

ଚନ୍ଦାମା ରମଜାନ୍‌କୁ ଜୋରରେ ନିଶା ଧରିବା ପର୍ଯ୍ୟନ୍ତ ଅପେକ୍ଷା କଲା । ମଦ ନିଶାରେ ରମଜାନ୍ ବିଷର ପ୍ରତିକ୍ରିୟା ଅନୁଭବ କରି ପାରିବ ନାହିଁ । ଚନ୍ଦାମା ମୃଦୁ ହସିଲା । ନିଜେ ବିଷ ଖାଇ ଆତ୍ମହତ୍ୟା କରିଦେବ ବୋଲି ସେ ଅନେକ ଦିନରୁ ବିଷ ଆଣି ଲୁଚେଇ ରଖିଥିଲା । ଶେଷକୁ ସେଇ ବିଷ ରମଜାନର ପ୍ରାଣ ନେଲା ।

ଚନ୍ଦାମା ଦେଖିଲା ରମଜାନ୍ ବେହୋସ୍ । ତା ପରେ ବିଷର ପ୍ରତିକ୍ରିୟା ଆରମ୍ଭ ହେବ । ରମଜାନର ଆଉ ହୋସ୍ ଆସିବ ନାହିଁ କି ସେ ଆଉ ଉଠିବ ନାହିଁ । ଚନ୍ଦାମା ପୁଣି ଶୋଇବା ଘରଟିକୁ ଲେଉଟି ଆସିଲା । ବର୍ଷା ପୁରା ଛାଡ଼ିଯାଇଛି । ବିଜୁଳି, ଘଡ଼ଘଡ଼ି ସବୁ ବନ୍ଦ ହୋଇଗଲାଣି । ଈଶ୍ୱରଙ୍କର ଅପାର କରୁଣା । ଆଜି ଚନ୍ଦାମାର ମନରେ ଅପୂର୍ବ ଶାନ୍ତି । ଦେହରେ ଅସୀମ ବଳ ।

ପିଲାଟା ଉଠି ବସିଛି । ଚାରିଆଡ଼କୁ ଭୟାର୍ତ୍ତ ଦୃଷ୍ଟି ଡୋଳା ଚାହୁଁଛି । ଚନ୍ଦାମା ତାକୁ କହିଲା, "ତୁ ଡରନା । ତୋର ମୁଁ କିଛି କରିବି ନାହିଁ । ଚାଲ, ତୋ ମା ପାଖରେ ନେଇ ଛାଡ଼ିଦେଇ ଆସିବି" । ଚନ୍ଦାମା ସିଦ୍ଧାର୍ଥକୁ ବହୁ ଚେଷ୍ଟା କରି ଖଣ୍ଡେ ରୁଟି ଖୁଆଇଲା । ତାପରେ ତାକୁ ଯତ୍ନରେ କାଖେଇ ଦରଜା ଖୋଲି ବାହାରକୁ ଚାଲି ଆସିଲା ।

× × ×

ପୁଲିସ୍ ଇନ୍‌ସପେକ୍ଟର ବିଶ୍ୱନାଥ ବାବୁ ବାହାରେ ଆବାଜ୍ ଶୁଣି କବାଟ ଫିଟାଇଲେ । ରାତି ସେତେବେଳକୁ ପ୍ରାୟ ଦୁଇଟା ପାଖାପାଖି । ଦେଖିଲେ ପିଲାଟାଏ ଧରି ଛିଡ଼ା ହୋଇଛନ୍ତି ଜଣେ ମଧ୍ୟବୟସ୍କା ନାରୀ । ପିଲାଟାର ଚେହେରା ନିରୀକ୍ଷଣ କରି ସେ ଚମକି ପଡ଼ିଲେ, ଆଶ୍ଚର୍ଯ୍ୟ !!

ଚନ୍ଦାମା ସିଦ୍ଧାର୍ଥକୁ ଧରି ବାରଣ୍ଡାରେ ଛିଡ଼ା ହୋଇଥିଲା । ସେ ଜାଣି ନ ଥିଲା ଅନ୍ଧାର ପାଇଁ ଆସି ସେ ଯେଉଁଠି ପହଞ୍ଚି ଯାଇଛି ସେଇଟା, ଜଣେ ପୁଲିସ୍ ଅଫିସରଙ୍କ ଘର ।

ବିଶ୍ୱନାଥ ବାବୁ ଚନ୍ଦାମାକୁ ଘର ଭିତରକୁ ଆସିବାକୁ କହି କବାଟ ଦେଇ ଭିତରକୁ ଚାଲିଗଲେ । ଟେବୁଲ୍ ଡ୍ରୟାରରୁ ଫଟଟା କାଢ଼ି ସେ ଆଲୁଅରେ ପିଲାଟାର

ଚେହେରା ମିଳାଇବାକୁ ଚେଷ୍ଟା କଲେ । ଏ କଣ !! ଏଇ ପିଲାଟା ଯେ ନିଶ୍ଚିତ ଭାବେ ଅମରେଶ ବାବୁଙ୍କ ପୁଅ ଯିଏ ଆଜ ରାତ ଦଶଟା ବେଳେ ଆସି ତାଙ୍କ ପୁଅ ନିରୁଦ୍ଦିଷ୍ଟ ବୋଲି ଥାନାରେ ଏତଲା ଦେଇ ଜଗି ବସିଛନ୍ତି । ତାଙ୍କର ଗୋଟାଏ ଜିଦ୍ ପୁଅକୁ ଠିକ୍ ଆଣି ନ ଦେଲେ ସେ ଏହି ଥାନା ବାରଣ୍ଡାରେ ମୁଣ୍ଡ ପିଟି ପିଟି ମରିଯିବେ । ଘରକୁ ଫେରିବେ ନାହିଁ ।

ଚନ୍ଦାମା କହିଲା, ବାବୁ ! ଏ ମୋର ପୁଅ । ରାତିଟା, ପୁଣି ବର୍ଷା । କାମକୁ ଯାଇଥିଲି । ଫେରୁ ଫେରୁ ଡେରି ହୋଇଗଲା । ଆଜି ରାତିକି ଏଠି ରହି ସକାଳୁ ଚାଲିଯିବି ।

ଚନ୍ଦାମା ଭୁଲ୍ କଲା । ସେ ଭାବିଲା, ଅସଲ କଥା କହିଲେ ହୁଏତ ପିଲାଟାକୁ କାଳେ ସେ ଅଜଥରେ ହରାଇ ବସିବ ! ସେ ଜବାବ ଦେଇଛି । ନିଶ୍ଚୟ ତା' ମା ପାଖରେ ପହଞ୍ଚାଇ ଦେବ । ରାତିରେ ପିଲାଟା ରାସ୍ତା ଚିହ୍ନାଇ ପାରୁନାହିଁ । ସକାଳେ ଖେଳ ପଡ଼ିଆ ପାଖକୁ ନେଇଗଲେ ସେ ତା'ର ଘର ଚିହ୍ନାଇ ଦେବ ।

"ଅଚ୍ଛା ! ତେବେ ମଧ୍ୟ ଠିକଣା ସ୍ଥାନରେ ପହଞ୍ଚାଇ ଦେବାର ବ୍ୟବସ୍ଥା ମୁଁ କରୁଛି", ବିଶ୍ୱନାଥ ବାବୁ କହିଲେ । ଏଥର ଟେଲିଫୋନ ରିସିଭର୍ କାନରେ ଦେଇ ସେ ଡାଏଲ୍ ଘୁରାଇଲେ, ହାଲୋ !! ପୁଲିସ ଷ୍ଟେସନ...କିଏ ? ହଁ, ଜଲଦି ଏସ. ଆଇ. ସିଂ ବାବୁଙ୍କୁ ପଠାଅ, ଅପରାଧୀ ଜଣେ ନାରୀ...ପିଲାଟା ମଧ୍ୟ ଅଛି । ଅମରେଶ ବାବୁଙ୍କୁ ସଙ୍ଗରେ ଆଣ ।

ଚନ୍ଦାମାର ଶରୀରରେ ଭୟର ଏକ ଶିହରଣ ଖେଳିଗଲା । ଦୁଃଖ ଓ ଲଜ୍ଜାରେ ସେ ଜଡସଡ଼ ହୋଇଗଲା । ହାତଯୋଡ଼ି ସେ କହିଲା, ନା...ନା...ବାବୁ ମୋତେ ବିଶ୍ୱାସ କରନ୍ତୁ । ମୁଁ ଦୋଷୀ ନୁହେଁ । ମୁଁ ତ ପିଲାଟାକୁ ଖୁବ୍ କଷ୍ଟରେ ଆଣିଛି ତା' ମା ପାଖରେ ଛାଡ଼ି ଦେବାପାଇଁ ।

—ତେବେ କଦାପି ବିଶ୍ୱାସ କରାଯାଇ ପାରେନା । ବର୍ତ୍ତମାନ କହୁଥିଲୁ ସେ ତୋ ପୁଅ । ରାତିରେ ଏଠାରେ ରହି ଚାଲିଯିବୁ ବୋଲି । ଆଉ ସଙ୍ଗେ ସଙ୍ଗେ ପୁଣି ଆଉ ଗୋଟାଏ କଥା କହିଲୁଣି । କେଉଁଟା ଗପ ମନେ ମନେ ଫାନ୍ଦୁଛୁ ?

—ନା...ବାବୁ...ମନରୁ କିଛି ଫାନ୍ଦିନି । ଆପଣ ଏ ପିଲାକୁ ପଚାରନ୍ତୁ ।

—ପିଲାକୁ ପଚାରିବା କିଛି ଦରକାର ନାହିଁ । ତାକୁ ତ ଭୟ ଦେଖାଇଥିବୁ ସତକଥା ନ କହିବାକୁ ।

—ଗ୍ରେଟବାବୁ, ତମେ କୁହ ମୋର ଦୋଷ କ'ଣ ? ତମକୁ ମୁଁ ସେ ପିଶାଚଠାରୁ ଉଦ୍ଧାର କରି ଆଣିନି ତମ ମା ପାଖରେ ଛାଡ଼ିଦେବି ବୋଲି ? ଏଥର ଚନ୍ଦାମା ସିଦ୍ଧାର୍ଥର ଦୁଇ ବାହୁ ହଲାଇ ଦେଇ ବିଚଳିତ ହୋଇ ପଚାରିଲା ।

ସିଦ୍ଧାର୍ଥ କିନ୍ତୁ ମୂକ । କ୍ଲୋରୋଫର୍ମର ମାତ୍ରାଧିକ ପ୍ରଭାବ ହେତୁ ତା'ର କିଛି ମନେ ପଡ଼ୁନାହିଁ । ମସ୍ତିଷ୍କ ଠିକ୍ କାମ କରୁନାହିଁ । ସେ କେବଳ ଜଡ଼ ଭଳି ଚନ୍ଦ୍ରାମାଙ୍କୁ ଅନାଇ ରହିଲା । ସ୍ପଷ୍ଟ ଦେଖିପାରିଲା ନାହିଁ ଯେ ଚନ୍ଦ୍ରାମା ନିର୍ଦ୍ଦୋଷ ।

ବାହାରେ କାହାର ସ୍ୱର ଶୁଭିଲା । ଆଖିର ପଲକ ମାତ୍ରେ ସିଂ ବାବୁ ଘରେ ପ୍ରବେଶ କଲେ । ପଛେ ପଛେ ଅମରେଶ ବାବୁ ।

ଅମରେଶ ବାବୁ ଘରେ ପ୍ରବେଶ କଲାକ୍ଷଣି ସିଦ୍ଧାର୍ଥର ବିବର୍ଣ୍ଣ ମୁହଁରେ ଆନନ୍ଦ ଓ ବିସ୍ମୟମିଶା ଅପୂର୍ବ ଭାବ ଖେଳିଗଲା । ବାପା ! ବାପା ! ପର ମୁହୂର୍ତ୍ତରେ ସେ ହାଉହାଉ-ଜର କାନ୍ଦି ଉଠିଲା । ପୁନର୍ବାର ବେହୋସ ହୋଇଗଲା । ଅମରେଶ ବାବୁ ସିଦ୍ଧାର୍ଥକୁ କୋଳ ଧରି ଈଶ୍ୱରଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରୁଥିଲେ । ଆଖିରୁ ତାଙ୍କର କୃତଜ୍ଞତାର ଅଶ୍ରୁ ଝରି ଯାଉଥିଲା ।

ଚନ୍ଦ୍ରାମା ଆଖିରୁ ମଧ୍ୟ ଅମୃତ ସନ୍ତୋଷର ଦୁଇଟୋପା ଲୁହ ଗଡ଼ି ପଡ଼ିଲା ବାପ ପୁଅଙ୍କର ଅପୂର୍ବ ମିଳନ ଦେଖି । ତାର ଅସୀମ ଚେଷ୍ଟାରେ ଏ ମିଳନ ସମ୍ଭବ ହୋଇ ପାରିଛି ସେଇ ଅନ୍ତର୍ଯାମୀ ଈଶ୍ୱରଙ୍କ କୃପାରୁ । ତାଙ୍କ ନିକଟରେ ସେ ଋଣୀ ।

ସିଂ ବାବୁ ଚନ୍ଦ୍ରାମା ହାତରେ ହାତକଡ଼ି ଫିଟାଇ ଦେଲେ । କଣ ବା ସେ କୈଫିୟତ ଆଉ ଦେବ ! ସବୁ ଗୋଳମାଳ ହୋଇ ଯାଇଛି । କିଏ ତା କଥାକୁ ବିଶ୍ୱାସ କରିବ ? ବିଶ୍ୱନାଥ ବାବୁ ଡାକ୍ତରଙ୍କୁ ଫୋନ କରିବା ଉଦ୍ଦେଶ୍ୟରେ ରିସିଭର ଉଠାଇଲେ ।

ଚନ୍ଦ୍ରାମାକୁ ପାଖ ସିଟ୍‌ରେ ବସାଇ ମିଃ ସିଂ କାର୍‌ରେ ଷ୍ଟାର୍ଟ ଦେଲେ ।

ଚନ୍ଦ୍ରାମା ଭାବିଲା, ତା କର୍ମର ପୁରସ୍କାର ମଣିଷଠାରୁ ଆଶା କରିବା ବୃଥା । ଯଦି ପୁରସ୍କାର ମିଳେ ତାହା ମିଳିବ ଈଶ୍ୱରଙ୍କଠାରୁ । ସେ ନିର୍ଦ୍ଦୋଷ ହୋଇ ମଧ୍ୟ ଜେଲରେ ରହୁ, ଏହାହିଁ ହୁଏତ ତାଙ୍କର ଇଚ୍ଛା ।

( ଆକାଶବାଣୀ, କଟକଙ୍କ ସୌଜନ୍ୟରୁ )

# ଫେରାର

ଲୋକଟାକୁ ଯେ କେହି ଦେଖିବ କହିବ ପାଗଳ । କାରଣ ପାଗଳର ସବୁଯାକ ଲକ୍ଷଣ ତା ନିକଟରେ ବିଦ୍ୟମାନ । ସିନେମା ହଲର ବାହାରପଟ ଚଉତରାରେ ଗୋଟିଏ ବେଞ୍ଚ ଉପରେ ବସିଥାଏ ସେ । ମନକୁ ମନ ବଡ଼ବଡ଼ କରି କଣ ଗୁଡ଼ାଏ କହେ, ହାତ ଉର୍ଦ୍ଧ୍ୱକୁ ଟେକି କାହାକୁ ପ୍ରଣାମ କରେ । ବେଳେ ବେଳେ ନୀରବରେ ବସି ଅଶ୍ରୁ ବିସର୍ଜନ କରେ । ଅନ୍ୟଥା ଭଙ୍ଗୀରେ ବେଳେବେଳେ ଜାକିଜୁକି ହୋଇ ଏପରି କରୁଣ ଦୃଷ୍ଟିରେ ଅନାଏ ଯେ, ମନେ ହୁଏ ତାକୁ ଯେପରି କିଏ ଚାବୁକ ଧରି ପ୍ରହାର କରିବାକୁ ଆସୁଛି । ସମସ୍ତେ ହସିଦେଇ କହନ୍ତି, ପାଗଳ । ଅଥଚ ଲୋକଟା ଖୁବ୍ ଭଦ୍ର । ରିକ୍ସାବାଲାଠୁ ଆରମ୍ଭ କରି ସିନେମା ହଲର ମାଲିକ ପର୍ଯ୍ୟନ୍ତ ସମସ୍ତେ ତାକୁ ସ୍ନେହ କରନ୍ତି । ଅହେତୁକଭାବେ ସହାନୁଭୂତିଶୀଳ ହୋଇ ଉଠନ୍ତି ତା ପ୍ରତି ।

ମଣିଷ ତା ନିଜ ମୁହଁ ଛଡ଼ା ଅନ୍ୟ ସମସ୍ତଙ୍କ ମୁହଁ ଦେଖିପାରେ । କିନ୍ତୁ ନିଜ ମନ ବ୍ୟତୀତ ଦେଖିପାରେନା ଅନ୍ୟର ମନ । ପାଗଳକୁ ଅନ୍ୟମାନେ ଦେଖି କୁହନ୍ତି ପାଗଳ । ଲୋକଟି କିନ୍ତୁ ନିଜ ମନର ନିଭୃତ ଗୋପନ କଥାଟି ନିଜେ କେବଳ ଜାଣେ । ଆତ୍ମ ସନ୍ତୋଷରେ ଭରିଉଠେ ମନ ତାର । ତାର ଅଭିନୟ ଯେ ଦର୍ଶକ ମନକୁ କିଣି ନେଇଛି ଏଥିପାଇଁ ତା ମନରେ ନିଜ ପ୍ରତି ଗଭୀର ଆତ୍ମପ୍ରତ୍ୟୟ ଆସିଯାଏ । କୌଣସି ଏକ ଦିନକୁ ସେ ଉତ୍କଣ୍ଠାର ସହିତ ଅପେକ୍ଷା କରି ରହେ । ସେ ଭରସା ରଖିଛି ନିଶ୍ଚୟ ସେ ଆଶା ତା'ର ପୂରଣ ହେବ । ତା'ପରେ ସେ ଏ ସ୍ଥାନ ତ୍ୟାଗକରି ଚିରଦିନ ନିମନ୍ତେ ଚାଲିଯିବ ।

ସିନେମା ଦେଖିବାକୁ ଆସୁଥିବା ପ୍ରତ୍ୟେକଟି ସ୍ତ୍ରୀ ପୁରୁଷଙ୍କୁ ସେ ଗଭୀର ମନଯୋଗ ସହକାରେ ଲକ୍ଷ୍ୟକରେ । ଯେପରି ଏତେ ଲୋକଙ୍କ ମଝିରେ ସେ ଜଣେ କାହାକୁ ଖୋଜୁଛି ।

ବାମ ପାନଦୋକାନୀ ତା କଡ଼କୁ ଲାଗି ଚା ଦୋକାନ ଦେଇଥିବା ଲୋକଟି ପାଖକୁ ଉଠିଯାଇ କହେ, ହରିଆ ନା ! ଏ ପାଗଳଟା ପ୍ରକୃତ ପାଗଳ ନୁହେଁ ।

ଚୁପ୍‌ବେ । ପାଗଳଟା, ପୁଣି ପାଗଳ ନୁହେଁ କ'ଣ ?

ହଁ ମ ଦେଖୁନୁ, ପାଗଳଟା କ'ଣ ଏମିତି କାହାକୁ ଭଦ୍ର ବ୍ୟବହାର ଦେଖାଇବ ! ଆମର ଏଇ ଥାନା ବାବୁ ମ, ସିଏ ନୂଆ ହୋଇ ଏଠାକୁ ବଦଳି ହୋଇ ଆସିଛନ୍ତି ସେ କ'ଣ କହନ୍ତି ଜାଣୁ ?

କିଏ ? ହରିଆ ଉତ୍କଣ୍ଠିତ ହୋଇ କହିଲା ।

ନେ ଜାଲ ଯାନ କଣିବାକୁ ଅଣିଥିଲେ, ବୁଝିଲୁ ? ହେଡକନେଷ୍ଟବଲେ ଜଣେ ଲୋକର ସାର୍ଟ କଲର୍ ଧରି ଭିଡ଼ି ଭିଡ଼ି ଆଣି ତାକୁ ଥାନାବାବୁଙ୍କ ସାମ୍ନାରେ ଠିଆ କରେଇ ଦେଇ ମାଗଲଟା କହିଲା, "ଏହାକୁ ଗିରଫ କରନ୍ତୁ ଆଜ୍ଞା । ସିନେମା ହଲ ଫଟକରେ ଏ ଲୋକ ଟିକେଟ୍ ବ୍ଲାକ୍‌ରେ ବିକୁଥିଲା ।"

ପ୍ରଥମେ ଥାନାବାବୁ ତା' ମୁହଁକୁ ଭଲ ଭଲ କରି ଅନେଇଲେ । ବ୍ଲାକ୍ କରୁଥିବା ଲୋକଟିକୁ ବେଞ୍ଚ ଉପରେ ବସାଇ ପାଗଲକୁ ପ୍ରଶ୍ନ କଲେ, "ତମେ କିଏ ? ଏଠାରେ କଣ କରୁଛ ? ମୁଁ ତମକୁ ପୂର୍ବରୁ କେଉଁଠି ଦେଖିଛି, କଣ ତମର ନାଁ ?"

ପାଗଲଟା ମହାଅଡୁଆରେ ପଡ଼ିଲା, ଇତସ୍ତତଃ ହୋଇ ପଳାୟନ କରିବ ବୋଲି ଚାହାଁଗଲା, କିନ୍ତୁ ଏତେ ପୋଲିସ ବାଲା, ଉତ୍ତରଗଲା ପର୍ଯ୍ୟନ୍ତ ଘେରି ଦେଇଥିବାରୁ, ଇଏ କି ତାକୁ ଛାଡ଼ନ୍ତି । ଅନନ୍ତ ଜୋର୍‌ରେ ତାକୁ ପଚାରିଲେ, "କୁହ ତମ ନାଁ କଣ ?"

ମୋ ନାଁ ? ପାଗଲ ହସିଲା ।

ଆଉ କଣ ମୋ ନାଁ । ମୁଁ ତମକୁ ପଚାରୁଛି ।

ମୋ ନାଁ ? ମୋ ନାଁ । ମୁଁ ଜାଣେନା ।

ଜାଣନା ? ମତେ ଛୋଟ ପିଲା ପରି ଭୁଲେଇବାକୁ ଚେଷ୍ଟା କରନା ।

ମୁଁ ଆପଣଙ୍କୁ ଭୁଲାଉନି—ନିଜେ ଭୁଲି ଯାଇଛି ।

ଭୁଲି ଯାଇଛୁ କ'ଣ ? ତମ ନାଁ ?

ହଁ, ଆଜ୍ଞା ।

ଏହା କଣ ସମ୍ଭବ, କେହି କଣ ନିଜ ନାଁ ଭୁଲିଯାଏ !

ଆଜ୍ଞା, ମୁଁ ଗୋଟାଏ ପାଗଲା ମୋର ଅତୀତ ନାହିଁ କି ଭବିଷ୍ୟତ ନାହିଁ, ଖାଲି ବର୍ତ୍ତମାନକୁ ଧରି ବାଦୁଡ଼ି ଭଳି ଝୁଲୁଛି ସଂସାର ବୃକ୍ଷରେ ।

ବାଃ, କଥାତ ବେଶ୍ ବାଗେଇ କହି ପାରୁଛ । କାଣ ଅନ୍ୟମାନଙ୍କ ସଙ୍ଗେ ଖେଳିଲେ ଚଳିବ, ମୋ ସାଙ୍ଗରେ ନୁହେଁ ।

ମୁଁ ଖେଳୁନି କାହା ସଙ୍ଗରେ ।

ଖେଳୁନ । ଦେଖୁଛି ସିଧା ବାଟରେ ତମେ ମାନିବ ନାହିଁ ।

କନ୍ଥ ବଙ୍ଗା ବାଟରେ ଯିବା ଦରକାର କ'ଣ ? ମୁଁ ନେଇକି ଡକାଯାଉ ନୁହେଁ, ଆପଣଙ୍କୁ ଡରିବ କାହିଁକି ?

ତମେ ମତେ ଡରନାହିଁ ?

ନା……ଦୃଢ଼ ଭାବେ କହିଲା ଯାଗଲଟା,

ଅଚ୍ଛା ? ଦେଖାଯାଉ । ଥାନାବାବୁ ତା ହାତ ଛାଡ଼ିଦେଇ କହିଲେ, "ଯାଅ" !

ବୁଝିଲୁ, ସେଇଟା ପୁରୁଣା ଦାଗୀ ଫାଶି ହୋଇଥିବ । ନହେଲେ ଥାନା ବାବୁ ତାକୁ ଜାଣିଲେ କେମିତି ? କହିଲା ହରିଅ । ଯାବେ ପୋଲିସ ବାଲା ଖାଲି ଚୋର ଦାଗୀଙ୍କୁ ଚହ୍ନନ୍ତି ଆଉ କାହାକୁ ନୁହେଁ ? ଦାମ ଦୃଢ଼କଣ୍ଠରେ ଉତ୍ତର ଦେଲା । ସମରବାଲ୍ଲଭ ଆଉ ସିନେମା ହଲରେ ପ୍ରବେଶ ନକରି ସେଇଠୁ ଫେରିଗଲେ ଘରକୁ । ତାଙ୍କ ମନ ଚଞ୍ଚଳ ହୋଇ ଉଠୁଥିଲା । ସିଧା ସେ ଟେବୁଲ ପାଖକୁ ଯାଇ ଡ୍ରୟାର ଖୋଲି ଏକ ଫାଇଲ ବାହାର କଲେ । ତର୍‌ତର୍‌ରେ ପୃଷ୍ଠା ଓଲଟାଇ ବାହାର କଲେ ଏକ ଫଟୋ । କିଛିକ୍ଷଣ କଲେ ଗଭୀର ଅନ୍ତର୍ଦୃଷ୍ଟିରେ । ହଁ, ଏଇ ସେଇ ଲୋକ । ଠିକ୍ ସେଇ ଆଖି, ନାକ, ଭ୍ରୂଲତା ବାଳ କୁଣ୍ଡାଇବାର ଭଙ୍ଗୀ, ତଫାତ୍ କେବଳ ମୁହଁର ଅଯତ୍ନ ବର୍ଦ୍ଧିତ ଦାଢ଼ି । ଯାହା ଅଭିନୟ କଲେ ମଧ୍ୟ ସେ ତାଙ୍କୁ ଫାଙ୍କିଦେଇ ପାରିବନି । ଚା କପ୍ ଧରି ସେ କକ୍ଷରେ ପ୍ରବେଶ କଲା ସୁନୀତା । ସମର ଚଟ୍ କରି ଫାଇଲ ବନ୍ଦ କରିଦେଲେ । ସୁନୀତା ଚା' କପ୍ ଟେବୁଲ ଉପରେ ରଖି ଫେରି ଯାଉଥିଲା । ପଛରୁ ତାକୁ ଏକ ଦୃଷ୍ଟିରେ କିଛିକ୍ଷଣ କହୁଥିଲେ ସମର । ସୁନୀତା ଯେମିତି ଏକ ଚଳନ୍ତା ଶବ ! ହସୁଛି, କଥା କହୁଛି, ଚାଲୁଛି, ବୁଲୁଛି ଅଥଚ ସେଥିରେ ଜୀବନର ସ୍ପର୍ଶ ନାହିଁ । ତା ନିକଟରେ ଜୀବନ ମୃତ୍ୟୁଠାରୁ ବି ହୃଦୟହୀନ । ବରଫର ଏକ ସ୍ତୂପୀକୃତ ପାହାଡ । ଉପର କଠିନ ଭିତରେ ଶୋକର ସମୁଦ୍ର । ଲାଗେ ସୁନୀତା ଯେପରି ଖୁବ୍ ସୁଖୀ ବୋଲି ଛଳନା କରେ । ବେଳେବେଳେ ସମର ଏ ପ୍ରଶ୍ନ କରନ୍ତି ତାକୁ । ସେ ଆଖିରୁ ଲୁହ ଖସାଇ ଅନାଏ । ଥରିଲା ଓଠରେ କହେ, "ମତେ କାଇଁ ସନ୍ଦେହ କର ?

ସମର ସଙ୍କୋଚରେ କହନ୍ତି, ନା ।

"ନାଁ । । ତ ପୁଣି ଏକା ପ୍ରଶ୍ନ ବାରମ୍ବାର କର କାହିଁକି ?"

ସୁନୀତା । ତମେ ଏତେ ଉଦାସ ରୁହ କାହିଁକି ?

ଜଣେ କ'ଣ ଖାଲି ବର୍ତ୍ତମାନକୁ ନେଇ ସୁଖୀ ହୁଏ ? ଅତୀତ ଭବିଷ୍ୟତ କଥା କିଛି ଭାବେନା ?

ଜାଣେ, ତୁମ ଭଳି କୋଟିପତି ପିତାର କନ୍ୟା ମୋ ଭଳି ଏକ ନିଃସ୍ୱକୁ ବିବାହ କରିବା ଉଚିତ ହୋଇ ନାହିଁ । ତୁମ ଘରର ସୁଖ ଶାନ୍ତି ଆୟସ ମୁଁ ତୁମକୁ ଦେବାକୁ ଅକ୍ଷମ । ତଥାପି ତ ବାପା ତମର ମତେ ଲକ୍ଷପତିର ଗୌରବ ଆଣି ଦେଇଛନ୍ତି । କୋଠାବାଡ଼ି ଗାଡ଼ି ବ୍ୟାଙ୍କ ବାଲାନ୍ସ ସବୁତ ତୁମକୁ ଦେଇଛନ୍ତି । ତୁମ ପାଇଁ ବର୍ତ୍ତମାନର ଦୁଃଖ କେବଳ ମୁଁ ନା ? କାହିଁକି ଏ ଚିନ୍ତା ତମେ କରି ବସିଲ ସୁଜାତା । ଚାହିଁଥିଲେ କେତେ ଯୋଗ୍ୟପାତ୍ର ତମ ହାତ ଧରିବାକୁ ଧାଡ଼ିବାନ୍ଧି ଆସନ୍ତେ ।

ସୁଜାତା ବଡ଼ ବଡ଼ ଆଖିରେ ତାଙ୍କ ମୁହଁକୁ ଚାହେଁ । କହେ, ବାସ୍ ଶେଷ ହେଲ ନା ଆଉ କିଛି ଅଛି । ମୋ ବିଷୟରେ ସିଦ୍ଧାନ୍ତ ନେବାକୁ ତମେ କିଏ ? ମୋର କଣ ନିଜ ଇଚ୍ଛାର କୌଣସି ମୂଲ୍ୟ ନାହିଁ ? ପସନ୍ଦ କରିବାର ଅଧିକାର ନାହିଁ ? ଅଭିମାନରେ ସୁଜାତାର କଣ୍ଠ ଅବରୋଧ ହୋଇ ଆସେ, ଓଠ ଥରି ଉଠେ । ଆଖିରୁ ପାଣି ବାହାରି ଆସେ । ଦୁଇ ହାତ ପାପୁଲି ସାହାଯ୍ୟରେ ମୁହଁକୁ ଘୋଡ଼ାଇ କରୁଣ କ୍ରନ୍ଦନରେ ସେ ଘରକୁ ଶୋକମଗ୍ନ କରିଦିଏ ।

ସମର ଆତଙ୍କିତ ହୋଇ ଉଠନ୍ତି । ଅନୁତାପ କରନ୍ତି । ତା ପାଖକୁ ଉଠିଯାଇ ଲୁହ ପୋଛି ଦେଇ ଆଦର କରି କହନ୍ତି, "ସୁଜାତା ! ମୁଁ ପୋଲିସ ବାଲା ନା ସମସ୍ତଙ୍କୁ ସନ୍ଦେହ କରେ. ଏଥର କ୍ଷମା ଦିଅ" । ସୁଜାତା ଚାଲିଯାଉଛି ଲୀଳାୟିତ ଛନ୍ଦରେ, ପିନ୍ଧିଛି ମେଘ ରଙ୍ଗର ଶାଢ଼ୀ ଓ ବ୍ଲାଉଜ । ହାତରେ ଦୁଇ ପଟ ଲେଖାଏଁ ସୁନା ଚୁଡ଼ି ସହିତ ଦୁଇ ପଟ ଶଙ୍ଖା, ମଥାରେ ଛିଟିଏ ସିନ୍ଦୁର । ଏତକ ପରିପାଟିରେ ସୁଜାତା ଅପୂର୍ବ ସୁନ୍ଦର । ନିଜକୁ ଭାଗ୍ୟବାନ ମନେ କରନ୍ତି ସମର ବଲ୍ଲଭ । ସୁଜାତା ପରି ସ୍ତ୍ରୀ ବହୁ ତପସ୍ୟାର ଫଳ । କିନ୍ତୁ ସେ ନିଜେ କଣ ସ୍ୱାମୀ ହିସାବରେ ବହୁ ତପସ୍ୟାର ଫଳ ବୋଲି ମନେ ହୁଅନ୍ତି ସୁଜାତାକୁ ? ଯେତେ ବୁଝାଇଲେ ବୁଝେନା ମନ । ସୁଜାତା ପରି ଅଲଅଲ ଝିଅ କନ୍ୟା ତାକୁ ବିବାହ କରିବାର ଅନ୍ତରାଳେ କି ଖେୟାଲ ରହିଛି !!

ସୁଜାତା ! ……ସେ ଘରୁ ଅପସରିଯିବା ପୂର୍ବରୁ ସୁଜାତାକୁ ଡାକିଲେ ସମର ବଲ୍ଲଭ । ସୁଜାତା ଫେରିଆସି ପ୍ରଶ୍ନିଳ ଦୃଷ୍ଟିରେ ଚାହିଁଲ । ଶୁଣ, ମୋର କାଲି ବାହାରକୁ ଯିବାର ଅଛି, ଗୋଟାଏ ଜରୁରୀ କାମରେ । ରାତିରେ ଫେରି ପାରେ । କାହାକୁ କହିବ ଜଗିବା ପାଇଁ ? ପ୍ରଶ୍ନକଲେ ସମର ବଲ୍ଲଭ ।

ନା, ଦରକାର ନାହିଁ । ଆଜି ମମତା ଆସିବ ବୋଲି ଫୋନ କରିଛି, ତାକୁ ମୁଁ ଅଟକାଇ ନେବି । ସେ ମନା କରିବନାହିଁ । ଗପ କରୁ କରୁ ରାତ ପାହିଯିବ । ମୃଦୁ ହସି କହିଲ ସୁଜାତା । ଠିକ୍ ଅଛି । ସେ ଭଲ ହେବ ।

ପରଦିନ ଦଶଟା ସୁଦ୍ଧା ସମର ବଲ୍ଲଭ ଅଫିସରେ ତାଙ୍କ ଜରୁରୀ କାମରେ ବାହାରି ଗଲେ । ସୁଜାତା ଏ ଖବର ସେକାଳୁ ମମତାକୁ ଜଣାଇ ଦେଇଥିଲା । ମଧ୍ୟାହ୍ନରେ ମମତା ଘରେ ରାତି ରହଣି କଥା ଜଣାଇ ଦେଇ ଆସି ପହଞ୍ଚିଲା ।

ମଧ୍ୟାହ୍ନ ଭୋଜନ ସମାପ୍ତି ପରେ ସୁଜାତା ଓ ମମତା ଗପର ପେଡ଼ି ଖୋଲିଦେଲେ, ସୁଜାତାର ଜ୍ୟେଷ୍ଠ ପୁଅକୁ ନେଇ ଗଲ କରୁ କରୁ ମମତା ହଠାତ୍ ପ୍ରଶ୍ନ କଲା । ଆଚ୍ଛା ସୁଜାତା ! ତୋର ସନ୍ଦୀପ କଥା ଜମା ମନେ ପଡୁନା ?

ମମତା ! ଯନ୍ତ୍ରଣା କାତର ହୋଇ ଉଠିଲା ସୁଜାତାର କଣ୍ଠସ୍ୱର ।

ମମତା ଅନୁତାପ କଲା । ସେ ନିଜେ ମଧ୍ୟ ଜାଣେନା ଏପରି ଏକ ପ୍ରଶ୍ନ କାହିଁକି ତା' ମନକୁ ଚାଲି ଆସିଲା । ସୁଜାତାକୁ ସ୍ନେହରେ ଅଡ଼େଇ ଆଣିଲା ନିଜ ଆଡ଼କୁ ମମତା, କହିଲା ବିଶ୍ୱାସ କର । ଏବେ ମଧ୍ୟ ମୋର ବିଶ୍ୱାସ ହୁଏନା ସନ୍ଦୀପ ଏପରି କରିପାରେ ! ଏତେ ନିରୀହ ଲୋକଟା ପୁଣି ଏତେ ଭୟଙ୍କର ହୋଇପାରେ ! ସୁଜାତା ଆଉ ନିଜକୁ ସମ୍ବରଣ କରି ପାରିଲା ନାହିଁ; ଅବାରିତ ଅଶ୍ରୁଧାରା ତା ନୟନରୁ ବହିଯିବାକୁ ଲାଗିଲା । ସନ୍ଦୀପ ଆଜି ଆଉ ତାର କି ଆବଶ୍ୟକତା ଅଛି ଏ ଜୀବନରେ ? ଦସ୍ୟୁରତ୍ନାକର ଦିନେ ବାଲ୍ମୀକି ମୁନି ପାଲଟି ଯାଇଥିଲା, କିନ୍ତୁ କେଉଁ ବାଲ୍ମୀକି ମୁନି କେବେ ଦସ୍ୟୁ ପାଲଟି ଯିବା ସେ ଶୁଣି ନାହିଁ । ସନ୍ଦୀପ ହଠାତ୍ ଯେପରି ଦେବତାରୁ ଦାନବ ପାଲଟି ଗଲା । ସୁଜାତାକୁ ବାଧ୍ୟ ହୋଇ ଭୁଲିଯିବାକୁ ପଡ଼ିଲା ଯେ ସନ୍ଦୀପ ଦିନେ ତା ଜୀବନର ଧ୍ରୁବତାରା ଥିଲା । ଅସ୍ୱାଭାବିକ ଭାବେ ସନ୍ଦୀପ କେମିତି ପାଗଳ ହୋଇଗଲା ଏବଂ ତାର ପ୍ରଥମ ପାଗଳାମି ହେଲା ତା'ର ପିତାକୁ ହତ୍ୟା କରିବାକୁ ଚେଷ୍ଟା । ଏହା ଯେପରି ଅବିଶ୍ୱାସ୍ୟ । ତା ପିତାଙ୍କ ପରିବର୍ତ୍ତେ ଯଦି ତାକୁ ହତ୍ୟା କରିଥାଆନ୍ତା ସନ୍ଦୀପ, ତେବେ ହୁଏତ ସେ ମୁକ୍ତି ପାଇଥାନ୍ତା ଏଭଳି ଏକ ଶୃଙ୍ଖଳର ଶିକୁଳିରୁ ଯାହା ତା ପାଦକୁ ନିୟନ୍ତ୍ରଣ କରୁଛି । ମାପି ଚୁପି ଚାଲିବାକୁ ବାଧ୍ୟ କରୁଛି । ବନ୍ଧନ ନ ଥାଇ ମଧ୍ୟ ବନ୍ଦିନୀ ଭଳି ଜୀବନ ଅତିବାହିତ କରୁଛି ।

ମମତା ତା' ହାତ ଚିପିଧରି କହିଲା, କିନ୍ତୁ ସନ୍ଦୀପ ଗଲା କୁଆଡ଼େ ? ମୁଁ ମୋ ସ୍ୱାମୀଙ୍କୁ ଅନୁରୋଧ କରିଛି ତାକୁ ଖୋଜି ବାହାର କରି ଆଣିବା ପାଇଁ । ସେ ପୋଲିସ ଅଫିସର ତା' ପାରିବେ । କିନ୍ତୁ ତାଙ୍କ ସମ୍ମୁଖରେ ମୁଁ ସନ୍ଦୀପର କେଉଁ ପରିଚୟ ଦେବି ? ଯଦିଓ ସନ୍ଦୀପ ସହିତ ମୋର କୌଣସି ଅବୈଧ ସମ୍ପର୍କ ନଥିଲା । ଦେବତା ପରି ମୁଁ ମନେ ମନେ ତାକୁ ପୂଜା କରୁଥିଲି । ନିଜକୁ ମୀରା ଭାବି ତାକୁ ଗିରିଧର ଗୋପାଳ ରୂପରେ ମନରେ ବସାଇଥିଲି । ଛାଡ଼ ସେ କଥା, ଚାଲ ପିକ୍‌ଚର ଯିବା ଆଜି । ମମତା କହିଲା, କଣ ଭଲ ପିକ୍‌ଚର ଆସିଛି ? ମୁଁ ଏଠିକୁ ଆସିବା ଦିନଠୁ ଥରେ ବି ଯାଇନି । ଭଲ ହେଉ ମନ୍ଦ ହେଉ, ଯିବା ତ ।

ସିନେମା ହଲ୍ ହତା ମଧ୍ୟରେ କାର୍ ପାର୍କ କରି ସୁନୀତା ଏବଂ ମମତା ଓହ୍ଲାଇଗଲେ । ଶ୍ରେଷ୍ଠ ପୁଅ ଶୋଇ ପଡ଼ିଥିଲା । ତାକୁ କାର୍ ସିଟ୍ ଉପରେ ଶୁଆଇଦେଇ ଜଗି ବସିଲା ରାଜୁ । ଟିକେ ଖାଲି ପୁଅକୁ ଜଗିବା ପାଇଁ ସୁନୀତା ପାଖରେ ଅଛି ।

ଡେରି ହୋଇ ଯାଇଥିଲା । ଦୁହେଁ ତରବରରେ ସିଡ଼ି ଉପରେ ଉଠିଯାଇ ହଲ୍ ମଧ୍ୟରେ ପ୍ରବେଶ କଲେ । ଠିକ୍ ସେହି ମୁହୂର୍ତ୍ତରେ ଏକ ଛାୟା ମୂର୍ତ୍ତି ସିଡ଼ି ତଳୁ ସନ୍ତର୍ପଣରେ ବାହାରି ଆସି ଏକ କୋଣରେ କାର୍‌କୁ ଅନାଇ ରହିଲା । ମଧ୍ୟାନ୍ତରରେ ସେମାନେ ଆସି ପୁଅକୁ ଦେଖିଗଲେ । ପୁଅ ଶୋଇଛି । ରାଜୁ ତାକୁ ଜଗି ବସିଛି ।

ଛାୟା ମୂର୍ତ୍ତିଟି ନିଜକୁ ତାଙ୍କ ଚକ୍ଷୁ ଅନ୍ତରାଳରେ ରଖି ଯାଇ ବସିଲା ଦାମ ପାନ ଦୋକାନ ବେଞ୍ଚ ଉପରେ । ତା'କୁ ଦାମ ଲକ୍ଷ୍ୟ କରି ପ୍ରଶ୍ନ କଲା, ବାବୁ, ଆଜି କଣ ଖୁବ୍ ଖୁସି ଜଣା ପଡୁଛ । କଥା କଅଣ ?

ହଁ, ଖୁବ୍ ଖୁସି । ଘରକୁ ଫେରିଯିବି ଆଜି ।

ତମର କଣ ଘର ଅଛି ?

ହଁ, ବାପା ମାଆ ସମସ୍ତେ ଅଛନ୍ତି ।

ବାବୁ ସତ କହିବ, ତମେ କଣ ସତରେ ପାଗଳ ?

ଲୋକଟି ହସିଲା ହୋ, ହୋ ହୋଇ ମନଖୋଲି । କହିଲା ନା, ପାଗଳର ଅଭିନୟ କରୁଛି । ଦେଖ ଦାମ ଭାଇ, କହିବନି କାହାକୁ । ମୁଁ ବିପଦରେ ପଡ଼ିବି !

ଦାମ ଆଶ୍ଚର୍ଯ୍ୟ ହୋଇଗଲା । କହିଲା, ମୁଁ ସେଇଆ ଅନୁମାନ କରିଥିଲି । ତମ ନାଁ କଣ ବାବୁ ? ତା ପ୍ରଶ୍ନର ଉତ୍ତର ଦେଲା ନାହିଁ ଲୋକଟି, ନୀରବରେ ବେଞ୍ଚ ଉପରୁ ଉଠିଯାଇ କାର୍ ଆଡ଼କୁ ଆଗେଇବାକୁ ଲାଗିଲା ।

ସୁନୀତା ତା ବାନ୍ଧବୀକୁ ନେଇ ସିନେମା ଦେଖିବାକୁ ଆସିଛି । କେବେଠୁ ସେ ଏଇ ଦିନଟିର ଅପେକ୍ଷାରେ ଥିଲା । ସୁନୀତାର ପୁଅ ଗାଡ଼ିରେ ଶୋଇଛି । ତେବେ ସୁନୀତା ସର୍ବାନ୍ତକରଣରେ ସୁଖୀ ହୋଇଛି । ସନ୍ଦୀପ ତ ଏହାହିଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରି-ଥିଲା । ହଠାତ୍ ଲୋକଟି ଚମକି ପଡ଼ିଲା । କାର୍‌ର କାଚ ସବୁ ପକେଇ ଦିଆଯାଇଛି । ସୁନୀତାର ପୁଅ ସିଟ୍ ଉପରେ ଟଳମଳ ଅବସ୍ଥାରେ ଠିଆ ହୋଇ ତା'ର ଟିକି ଟିକି ହାତ ଆଙ୍ଗୁଳିରେ କାଚକୁ ବାଡ଼େଇ ଚାଲିଛି । ଯଦି ପଡ଼ିଯାଏ !! ଆତଙ୍କରେ ଶିହରି ଉଠିଲା ସେ ଆଗକୁ ଯାଇ ଭିତରକୁ ନିରୀକ୍ଷଣ କଲା । ତାକୁ ଜଗି ରହିଥିବା ପିଲାଟା ଭିତରେ ଶୋଇ ଯାଇ ଦରଜା ବନ୍ଦ କରି ଦେଇଛି । ପିଲାଟା କାନ୍ଦିଲେ ହୁଏତ ଉଠି ପଡ଼ନ୍ତା, କିନ୍ତୁ ସେ

ଧାଡଗୋଡ଼ ହେଲାଣି ଏ ପାଖ ସେପାଖ ହେଉଛନ୍ତି । ତବ୍ ଭଡ଼୍‌ରେ ଅଗ ସିଟ୍‌ରେ ଶୁଆଇ ଦେଇ ଯାଇଥିଲେ ସେମାନେ । ଷ୍ଟିଅରିଂ ଧରି ମୋଡୁଛି ଛୁଆଟା । କଳ କବ୍‌ଜାଗୁଡ଼ା ମଧ୍ୟ ଟଣାଟଣି କରୁଛି । ଲୋକଟି କଣ କରିବ ଭାବି ପାରିଲା ନାହିଁ । ଛୁଆଟା ହିଁ ହିଁ ର ଧାରକୁ ଚାଲି ଆସିଲାଣି, ଗାଡ଼ିଟା ତଳକୁ ବାରମ୍ବାର ଝୁପି ହୋଇ ପଡ଼ୁଛି । ସେଇ ପିଲାଟା ଏଥର ତଳକୁ ଖସି ପଡ଼ିବ, ଷ୍ଟିଅରିଂ ବାଜି ବା ତଳେ ପଡ଼ି ଅନ୍ୟ କେଉଁଠାରେ ଆଘାତ ପାଇ ରକ୍ତାକ୍ତ ହୋଇଯିବ ତାର ଟିକି ଦେହଟି, ନା······ଆଗକୁ ଆଉ କିଛି ଭାବି ପାରିଲାନି ସେ. ତଳୁ ଏକ ପଥର ଉଠାଇ ନେଇ ବିପରୀତ ଦରଜାର କାଚ ଉପରେ ଜୋରରେ ଆଘାତ କଲା । ଝଣ ଝଣ ହୋଇ କାଚ ଭାଙ୍ଗିଗଲା । ଅପ୍ରତ୍ୟାଶିତ ଶବ୍ଦରେ ରାଜୁର ନିଦ ଭାଙ୍ଗିଗଲା । କିନ୍ତୁ ବୁଝି ନ ପାରି ସେ ଆର୍ତ୍ତ କଣ୍ଠରେ ଚିତ୍କାର କରି ଉଠିଲା, ଗୋଟିଏ ଅଚିହ୍ନା ଲୋକକୁ ସାମ୍ନାରେ ଦେଖି । ସେତେବେଳକୁ ଦରଜା ଫିଟାଇ ଲୋକଟି ଠିକ୍ ଛୁଆଟିକୁ ବାହାରକୁ ଆଣୁଛି ଦୁଇ ହାତ ପ୍ରସାରଣ କରି । ଏହା ଦେଖି ରାଜୁ ଆଗପଛ ନ ଭାବି ପାଟିକଲା ଚୋର······ଚୋର······ । ଦରୱାନଟା ପୂର୍ବରୁ କାଚ ଭାଙ୍ଗିବା ଶବ୍ଦ ଶୁଣିଥିଲା । ହଠାତ୍ ଚୋର, ଚୋର ଚିତ୍କାର ଶୁଣି ଦଉଡ଼ି ଆସିଲା ସେ କାର୍ ପାଖକୁ । ଦେଖିଲା ଲୋକଟି ଧରିଛି ପିଲାଟାକୁ କାଖରେ । ସେ କିଛି ନ ବୁଝି ପିଲାଟାକୁ ତା କାଖରୁ ଛଡ଼ାଇ ଆଣି ଆହୁରି ବଡ଼ ପାଟିରେ ଚିତ୍କାର କରି ଧରିଥିବା ଲାଠିରେ ଲୋକଟାକୁ ବାଡ଼େଇବାକୁ ଲାଗିଲା । ତାକୁ ଲକ୍ଷ୍ୟ କରି କଣ ଘଟିଛି ବୋଲି କିଛି ନ ଜାଣିଥିବା ଲୋକେ ମଧ୍ୟ ଆସି ତାକୁ ପିଟିବାକୁ ଆରମ୍ଭ କରିଦେଲେ । ସାରା ବାୟୁମଣ୍ଡଳ ପାଟିଗୋଳରେ ମୁଖରିତ ହୋଇ ଉଠିଲା । ଏତେ ଲୋକଙ୍କ ଚିତ୍କାର ଭିତରେ ମଳିନ ପଡ଼ିଗଲା ମାଡ଼ ଖାଉଥିବା ଲୋକଟିର ଆର୍ତ୍ତ କଣ୍ଠସ୍ୱର । ଠିକ୍ ସେତିକବେଳେ କରେଣ୍ଟ ଚାଲିଗଲା । ସିନେମା ବନ୍ଦ ହୋଇଯିବାରୁ ବଜାରର ଗଣ୍ଡଗୋଳ ଶବ୍ଦ ସିନେମା ହଲ ମଧ୍ୟକୁ ପହଞ୍ଚିଗଲା । ଲୋକେ ବାହାରକୁ ବାହାରି ଆସିଲେ । ଚତୁର୍ଦ୍ଦିଗରେ ହଇଚଇ, ପାଟିଗୋଳ, ଅଥଚ କେହି କିଛି ବୁଝିପାରୁ ନାହାନ୍ତି କଣ ହୋଇଛି । ବହୁ କଷ୍ଟରେ ଭିଡ଼ ଆଡ଼େଇ ସୁନୀତା ଏବଂ ମମତା କାର୍ ପାଖକୁ ଆସିଲେ । ରାଜୁ ସବୁ କଥା ରୋମାଞ୍ଚକର କାହାଣୀ ଭଳି ବର୍ଣ୍ଣନା କଲା ସେମାନଙ୍କ ଆଗରେ । ସୁନୀତାର କାନରେ ପଡ଼ୁଥାଏ ଏକ ଧୀର, ମୁମୂର୍ଷୁ ଏବଂ ଯନ୍ତ୍ରଣା ବିଜଡ଼ିତ ସ୍ୱର । ବିଶ୍ୱାସ କରନ୍ତୁ, ମୁଁ ଚୋର ନୁହେଁ, ପାଗଳ ନୁହେଁ, ମୁଁ ପିଲାଟାକୁ ବଞ୍ଚାଇବାକୁ ଯାଇଥିଲି, ଚୋରି କରିବାକୁ ନୁହେଁ ।

ପାନ ଦୋକାନୀ ଦାମ ଏ ପର୍ଯ୍ୟନ୍ତ ଅନ୍ଧାରରେ କିଛି ଦେଖି ପାରୁନଥିଲା କି ଶୁଣି ପାରୁନଥିଲା । ଏଥର ସେ ଠିକ୍ ବୁଝିପାରିଲା କାହା ଉପରେ ମାଡ ହେଉଛି । ହୃଦୟ ତାର ହାହାକାର କରି ଉଠିଲା । ଆଖିରୁ ପାଣି ନିଗିଡ଼ି ପଡ଼ିଲା । ଭିଡ଼ ଭିତରେ ପଶିଯାଇ ଲୋକଟିକୁ କୁଣ୍ଢାଇ ଧରି ତାର ସମସ୍ତ ଜୋର ଖଟାଇ ପାଟିକଲା, ମାରନ୍ତୁ ନାହିଁ ! ମାରନ୍ତୁ

ନାହିଁ, ମୁଁ ପାଗଳ ନୁହେଁ ପାଗଳ ନୁହେଁ । ନିଆଁରେ ପାଣି ପଡ଼ିଲା ପରି ସେଠାର ସମସ୍ତେ ଚୁପ୍ ହୋଇଗଲେ । ଗହଳି ଜାଗା ନିର୍ଜନ ହୋଇ ଆସିଲା ।

ପରବର୍ତ୍ତୀ ଘଟଣା ବୁଝିବା ପାଇଁ ସୁମିତାର ଆଉ ଧୈର୍ଯ୍ୟ କି ସାହସ ନଥିଲା । ସେ ଗାଡ଼ିରେ ବସି ଷ୍ଟାର୍ଟ ଦେଲା । ବହୁ କଷ୍ଟରେ ଭିଡ଼ ଭିତର ମଧ୍ୟରୁ କାର୍ ବାହାର କରି ଆଣି ଫୁଲ୍ ସ୍ପିଡରେ ଛୁଟାଇ ଦେଲା । କିନ୍ତୁ······ତା କାନରେ ଯେପରି ରହି ରହି ସେଇ ଲୋକଟିର ଯନ୍ତ୍ରଣାକାତର ସ୍ୱର ପ୍ରତିଧ୍ୱନିତ ହୋଇ ଉଠିଲା । ମୁଁ ପାଗଳ ନୁହେଁ··· ମୁଁ ପାଗଳ ନୁହେଁ ।

କେତେବେଳେ କଣ ଘଟିଯାଏ ତାହା କହି ହୁଏନା । ସବୁ ସ୍ଥିର ଥିଲାବେଳେ ଅଚାନକ ଝଡ଼ ଉଠେଇ ଆସି ସବୁ କିଛି ଛନ୍ନଛନ୍ନ କରିଦିଏ । ମଣିଷ ଅସହାୟ ହୋଇ-ପଡେ । ସମସ୍ତ ତା ଉପରକୁ ରାକ୍ଷସ ପାଲଟି ଝାମ୍ପ ମାରେ । ତାର ମୁନିଆଁ ମୁନିଆଁ ନଖରେ ମଣିଷକୁ ରକ୍ତ ବିଦାର କରାଏ । ନିଃସହାୟ ମଣିଷ ଖାଲି ମାଟି କାମୁଡ଼ି ପଡ଼ିରହେ । କିଛି ପ୍ରତିରୋଧ କରିପାରେନା ।

ସୁନୀତାର ମସ୍ତିଷ୍କ ଯେପରି ନିଷ୍କ୍ରିୟ ହୋଇ ଉଠୁଥିଲା । ପରିସ୍ଥିତିର ଭୟାବହତାରେ ତାର ଶରୀର ଶିହରି ଉଠୁଥିଲା ।

ପରଦିନ ସକାଳୁ ସମରବଲ୍ଲଭ ଫେରି ଆସିଲେ । ମୁଖମଣ୍ଡଳ ତାଙ୍କର ଆନନ୍ଦରେ ଉଦ୍ଭାସିତ । ଜରୁରୀ କାର୍ଯ୍ୟରେ ଯିବାବେଳର ଗାମ୍ଭୀର୍ଯ୍ୟ ଫେରିଲା ବେଳେ ନାହିଁ । ନିଶ୍ଚିନ୍ତ ଭାବେ ସଫଳକାମ ହୋଇ ଫେରିଛନ୍ତି ସେ । ତାଙ୍କୁ କାଲିର ଘଟଣା ସମ୍ପର୍କରେ କେଉଁଠୁ କେମିତି ଆରମ୍ଭ କରି କହିବ ସେ କଥା ଠିକ୍ କରିପାରୁ ନାହିଁ ସୁନୀତା । କଥାଗୁଡ଼ିକ ଯେପରି ନଈ ବଢ଼ି ପାଣି ପରି ଧସେଇ ଆସି ବାହାରିଯିବ ଗୋଟିକ ପରେ ଗୋଟିଏ ବାକ୍ୟ ଆକାରରେ ନୁହେଁ । ଶେଷରେ ନିଜର ବହୁ ଚେଷ୍ଟା ସଂଯତ କରି କହିଲା, "ଜାଣ ! ଆମ ପୁଅକୁ କାଲି ଜଣେ ଗ୍ରେଫ୍ତ କରି ନେଇ ଯିବାକୁ ବସିଥିଲା ।' '

ମାନେ !! କଣ କହୁଛ ତମେ ! ସମରବଲ୍ଲଭ ଅବାକ୍ ହୋଇଗଲେ । ହଁ, କାଲି ତମେ ନଥିଲ । ମମତା ପ୍ରଭାବ କଲ ପିକ୍‌ଚର ଦେଖି ଯିବା ପାଇଁ । ସଙ୍ଗରେ ନେଇଥିଲୁ ରାଜୁକୁ । ପୁଅକୁ ହଲ ଭିତରକୁ ନେଇଯାଉଁ ଥାଉଁ ହଠାତ୍ ଶୋଇ ପଡ଼ିଲା ସେ । ତେଣୁ ସେ କାର୍ ସିଟ୍‌ରେ ତାକୁ ଶୁଆଇ ଦେଇ ଗଲୁ । ପାଖରେ ଜଗି ବସିଲା ରାଜୁ । ଠିକ୍ ସେତିକିବେଳେ ଗୋଟିଏ ପାଗଳ ଆସି କାର୍ କାଚକୁ ଭାଙ୍ଗି ଦେଇ ହାତ ବଢ଼ାଇ ଦରଜା ଖୋଲି ଦେଲା ଏବଂ ପୁଅକୁ ଉଠାଇ ନେଲା । ରାଜୁର ଚିତ୍କାର ଶୁଣି ଦରୱାନଟା ଦଉଡ଼ି ଆସି ତାକୁ ଧରିଲା, କିନ୍ତୁ ଖୁବ୍ ମାଡ଼ ବସିଛି ଲୋକଟା ଉପରେ । ହୁଏତ ମରି ବି ଯାଇପାରେ ।

ଚମକି ପଡ଼ିଲେ ସମରବଲ୍ଲଭ, ସୁଜାତା, ସେ ଲୋକଟାକୁ ତମେ ଦେଖିଛ ?

ନାଁ……ଲୋକେ ଟାଣି ନେଇଥିଲେ ହଠାତ୍ ।

ସୁଜାତା… …ଓଃ……ସୁଜାତା……କେମିତି ମୁଁ କଣ କରିବି ? ମୁଁ ଜବାବ ଦେଇ ଆସିଛି ମୃତ୍ୟୁ ଶଯ୍ୟାରେ ତା ମା'କୁ । ଗୃହକୁ ଫେରି ଆନନ୍ଦ ବହିଥିବ ତା ବାପା ତାକୁ । ସେ ବର୍ତ୍ତମାନ କେଉଁଠି ?

ତାକୁ ପୋଲିସ ବାନ୍ଧି ନେଇ ଯାଇଥିବ ।

ଓଃ, ସୁଜାତା ଆସ ମୋ ସାଙ୍ଗରେ । ଶୀଘ୍ର ଆସ, ସମରବଲ୍ଲଭ ବ୍ୟସ୍ତ ବିବ୍ରତ ହୋଇ ଉଠିଲେ ।

କିନ୍ତୁ କୁଆଡ଼େ ? ତମେ ବି କଣ ପାଗଳ ହୋଇଗଲ ?

ହଁ ହଁ ସୁଜାତା, ମୁଁ ପାଗଳ, ତମେ ପାଗଳ, ସେମିତି ଦେଖିବାକୁ ଗଲେ ସାରା ଦୁନିଆ ପାଗଳ । ସେ ନିଜକୁ ଯେତେବେଳେ ମିଛରେ ପାଗଳ ବୋଲି କହିଲା ସମସ୍ତେ ବିଶ୍ୱାସ କଲେ । ବର୍ତ୍ତମାନ ସେ ପାଗଳ ନୁହେଁ କେଉଁ କିଏ ବିଶ୍ୱାସ କରିବ ?

ସୁଜାତା ଛାତିରେ ଏଥର ଚମକ ଲାଗିଲା । ଉତ୍କଣ୍ଠିତ ହୋଇ ସେ ପ୍ରଶ୍ନ କଲା, କଣ ତମେ ଏସବୁ କହୁଛ ? କାହା କଥା କହୁଛ ?

ସୁଜାତା, କାଲି ଯାହାକୁ ଅନ୍ଧ ଜନତା ନୃଶଂସ ଭାବରେ ମାରି ପକାଇବାକୁ ପାଗଳ ହେବ, ଗୋଟିଏ ଖବର, ସେ ପ୍ରକୃତରେ ପାଗଳ ନୁହେଁ । ଆମ ବିବାହର ଦୁଇ ମାସ ପରେ ତାର ଜଣେ ଅନ୍ତରଙ୍ଗ ବନ୍ଧୁ ସେ ଘର ଛାଡ଼ି କୁଆଡ଼େ ଗଲାଯାଇଛି ବୋଲି ମୋ ନିକଟରେ ଖବର କରିଥିଲା । ମତେ ଅନୁନୟ କରି କହିଲା ହାତଧରି ତା'କୁ ଖୋଜି ବାହାର କରିବା ପାଇଁ । ଅନ୍ତତଃ ଅଜିକୁ ଦେଢ଼ ବର୍ଷ ହୋଇଗଲା । ମୁଁ ତାକୁ ଖୋଜୁଛି । ଦୁଇଦିନ ତଳେ ମୁଁ ତାକୁ ଆବିଷ୍କାର କଲି ସିନେମା ହଲ ପାଖରେ । ସେଠାରେ ତା ବିଷୟରେ ସମସ୍ତ ତଥ୍ୟ ଯୋଗାଡ଼ କରି ଗତ କାଲି ମୁଁ ଆହୁରି ଦୃଢ଼ ନିଶ୍ଚିନ୍ତ ହେବା ନିମନ୍ତେ ତା ଘରକୁ ଯାଇଥିଲି । ଠିକଣା ଏବଂ ତାର ଗୋଟିଏ ଫଟୋ ତା'ର ବନ୍ଧୁ ମତେ ଦେଇଥିଲା । ମୋ ଠାରୁ ସବୁ ଶୁଣିବା ପରେ ସେମାନେ କି ଆନନ୍ଦରେ କି ଉଦ୍‌ବେଗରେ ତା ଫେରିବା ପଥକୁ ଚାହିଁ ବସିଛନ୍ତି ସେ କଥା ତମେ ଅନୁମାନ କରି ପାରିବନି ।

ସୁଜାତା ଯେପରି ପଥର ପାଲଟି ଯାଇଛି । କେବଳ କମ୍ପିତ ସ୍ୱରରେ ସେ ପ୍ରଶ୍ନ କଲା, କିନ୍ତୁ କାହିଁକି ସେ ପଳାତକ ସାଜିଲା ?

ସେ ଏକ ଦୀର୍ଘ ବିଷାଦମୟ କାହାଣୀ । ସେ ଗୋଟିଏ ଝିଅକୁ ମନୋନୀତ କରିଥିଲା, ତାକୁ ମାନସିକ ସମ୍ମାନ ଦେଲା, କିନ୍ତୁ ଦେଲାନାହିଁ ବଧୂର ସମ୍ମାନ, ଜାଣି ଜାଣି । କାରଣ ଦୁନିଆ ଏହା ଗ୍ରହି ନ ଥିଲା, ସୁନୀତା ! ମଣିଷ ଅପେ ଅପେ ପାଗଳ ହୁଏନି । ଏଇ ଦୁନିଆର ଧନ ପାଗଳ, ଏ ରାକ୍ଷସ ରୂପଧାରୀ ମଣିଷ ତାକୁ ପାଗଳ ବନେଇ ଦିଏ । ତଥାପି ସେ ପାଗଳ ହୋଇ ନଥିଲା । ତାକୁ ପାଗଳର ଅଭିନୟ ବାଧ୍ୟ ହୋଇ କରିବାକୁ ପଡ଼ିଥିଲା । କାରଣ ସେଇ ଧନଶାଳୀ କୁବେରଙ୍କ ଏକମାତ୍ର ଅଲିଅଳୀ ରାଜଜେମା ଯେ ଢିପ ଧରି ଦୁଧ କୁନ୍ଦୁକୁଆ କରୁଥିଲା ମୋ'ର ଏକ ଜିଦ୍ ଯଦି ସେ ବିବାହ କରିବ ତେବେ ସେଇ ତରୁଣକୁ । ନଚେତ୍ ଅନ୍ନଜଳ ସ୍ପର୍ଶ ନକରି ଦେହ ତ୍ୟାଗ କରିବ । ତରୁଣଟିର ବାରମ୍ବାର ବାରଣ ସତ୍ତ୍ୱେ ନିଜ ଅନ୍ତର ଝିଅଟି ତାକୁ ପ୍ରଣୟ ଭିକ୍ଷା କରିଥିଲା । ସମ୍ମତି ପ୍ରଦାନ କରି ତାକୁ ଅପେକ୍ଷା କରିବାକୁ କହିଥିଲା ସେ । ଦୁଇଜଣଙ୍କର ନୀରବ ପ୍ରେମ ଏକ ଶାନ୍ତ ସ୍ରୋତସ୍ୱିନୀର ଧାର ପରି ହୃଦୟର ନିଭୃତ ସୁଡ଼ଙ୍ଗ ମଧ୍ୟରେ ବାଟ କାଟି କାଟି ବହି ଚାଲିଥିଲା କିନ୍ତୁ ହଠାତ୍ ଦିନେ ସେଇ ଝରଣାର ପଥ ଅବରୋଧ କରି ଛିଡ଼ା ହେଲେ ପାହାଡ଼ ପରି ଝିଅଟିର ବାପା । ଧନ ଗର୍ବରେ ଯାହାଙ୍କ ଆଖିକୁ ମଣିଷଗୁଡ଼ାକ ପୋକ ମାଛି ପରି ଦେଖାଯାଆନ୍ତି । ଏପରି ଗୋଟିଏ ମାଛି, ଯାହାର ଖାଦ୍ୟ ଅହରଣର ଶକ୍ତି ନାହିଁ, ଅନ୍ୟର ଉଚ୍ଛିଷ୍ଟ ଉପରେ ଯେ ନିଜ ଜୀବନର ମାନ ନିରୂପଣ କରେ, ତାକୁ ପୁଣି ବିବାହ କରିବ ତାଙ୍କର ଝିଅ । ଅସମ୍ଭବ ! ମରିଯାଉ ସେ ଝିଅ !

ଝିଅ ବି ନିଜ ଜିଦ୍‌ରେ ଅଟଳ । ବାପା ଅଚଳ ମହାମେରୁ, ମଝିରେ ତରୁଣଟି କିଂକର୍ତ୍ତବ୍ୟବିମୂଢ଼, ନା ସେ ଝରଣାଟି ପାଇଁ ଅନ୍ୟ ବାଟ ଫିଟାଇ ପାରିଲା, ନା ତା' ପଥ ଅବରୋଧ କରି ଠିଆ ହୋଇଥିବା ପାହାଡ଼କୁ ଟଳାଇ ପାରିଲା ।

ଶେଷରେ ନିଜର ମାନସିକ ଜୀବନ ରକ୍ଷା କରିବାକୁ ଯାଇ ଦିନେ ମିଛରେ ପାଗଳ ସାଜି ହାତରେ ତୀକ୍ଷ୍ଣ ଛୁରିକା ଧରି ଝିଅଟିର ବାପାଙ୍କୁ ହତ୍ୟା କରିବାର ଅଭିନୟ କଲା । ଅଭିନବ ତାର ସିଦ୍ଧାନ୍ତ ! ସେ ଜାଣିଥିଲା ଏପରି ଏକ କାର୍ଯ୍ୟ କରିବା ଫଳରେ ଝିଅଟିର ଆଖିରେ ସେ ତଳକୁ ଖସିଯିବ । ନର୍କଗାମୀ ହେବ । ସବୁ ଓଲଟପାଲଟ ହୋଇଗଲା, ଆଶ୍ଚର୍ଯ୍ୟ ଚକିତ ହୋଇ ଝିଅଟି ତାକୁ କେବଳ ଚାହିଁ ରହିଲା । ପୋଲିସ ସେଠାରେ ପହଞ୍ଚିବା ପୂର୍ବରୁ ସେ ଖସି ଆସିଲା । ନିଜକୁ ହଜାଇ ଦେଲା ଦୁନିଆର ଅଗଣିତ ଲୋକ ଗହଳି ମଧ୍ୟରେ । ପୋଲିସ ତାକୁ ଆଜି ବି ଖୋଜୁଛି ।

ପରେ ଝିଅଟି କୌଣସି ପ୍ରତିବାଦ ନକରି ଅନ୍ୟ ଜଣକୁ ବିବାହ କରିଗଲା । ସୁଚୋକ୍ତ ପ୍ରଣୟୀ ତାର କେଉଁଠାରୁ ଖବର ସଂଗ୍ରହ କଲା ଯେ, ଝିଅଟି ଏଇ ସହରରେ ଅବସ୍ଥାନ କରୁଛି । ତାକୁ ଶେଷଥର ପାଇଁ ଦେଖିବା ଆଶାରେ ସେ ସିନେମା ହଲ୍ ପାଖରେ ଅପେକ୍ଷା କରି ରହିଥିଲା, ଏକଥା ସେ ତା ସାଙ୍ଗଙ୍କ ନିକଟ [illegible]

ହାତରେ ଧରାପଡ଼ିବା ପୂର୍ବରୁ ସେ ତା'ର ଶେଷ ଇଚ୍ଛା ପୂରଣ କରିନେବ । ଝିଅଟିକୁ ସାକ୍ଷାତ କରିନେବ । କିଏ ଜାଣେ ତା'ର ଆଶା ପୂରଣ ହୋଇଆନ୍ତା କି ନାହିଁ !

ସୁନନ୍ଦା ସନ୍ଦେହରେ ସମରବଲ୍ଲଭଙ୍କ ମୁହଁକୁ ନିରୀକ୍ଷଣ କଲା, ସମରବଲ୍ଲଭ ଏତେ ସବୁ କଥା ଜାଣିଛନ୍ତି । କିନ୍ତୁ ଜାଣନ୍ତି କି ସେହି ଝିଅଟି ହିଁ ହେଉଛି ସୁନନ୍ଦା ? ସୁନନ୍ଦାର ମୁହଁରେ ପ୍ରତିକ୍ରିୟାର ବଢ଼ି ଦେଖିବାକୁ ସମରବଲ୍ଲଭଙ୍କର ଅବସର ନ ଥିଲା । ସେ ଉଠିଯାଇ ଥାନାକୁ ଫୋନ କଲେ । ଠିକଣା ବୁଝି ଶରୀରର ବଦଳିଦେଇ ସୁନନ୍ଦା ହାତ ଧରି କହିଲେ, ଶୀଘ୍ର ଆସ ।

ଗାଡ଼ି ତୀବ୍ର ଗତିରେ ଛୁଟିଥିଲା ଏବଂ ତା ସହିତ ଦ୍ରୁତତର ହେଉଥିଲା ସୁନନ୍ଦାର ହୃଦୟର ସ୍ପନ୍ଦନ ।

ହସପିଟାଲ ସାମ୍ନାରେ ଗାଡ଼ିରେ ବ୍ରେକ ଦେଇ ସମରବଲ୍ଲଭ ଓହ୍ଲାଇଲେ । ପଛେ ପଛେ ସୁନନ୍ଦା । ସିଧା ଯାଇ ସେ ରୁଦ୍ଧନିଶ୍ୱାସରେ ଦଉଡ଼ି ଦଉଡ଼ି ପହଞ୍ଚିଲେ ପାଞ୍ଚ ନମ୍ବର କୋଠରୀ ଆଗରେ । ଭିତରୁ ନର୍ସଟିଏ ବାହାରି ଆସୁଥିଲା । ତାକୁ ଦେଖି ପ୍ରଶ୍ନ କଲେ, ଅବସ୍ଥା କିପରି ପେସେଣ୍ଟର ?

ଭଲ ନୁହେଁ । ସଂକ୍ଷିପ୍ତ ଉତ୍ତର ଦେଇ ନର୍ସଟି ଚାଲିଗଲା । ଡାକ୍ତର ମିଶ୍ର ଆସି ପହଞ୍ଚିଲେ । ମୃଦୁହସି କହିଲେ—କଣ ମୁର୍ଦ୍ଦାର ଗନ୍ଧ ବାଜିଗଲା ନାକରେ । ଆପଣମାନେ ଶାଗୁଣାଠୁ ବି ଅଧିକ ଜାଗ୍ରତ । କିନ୍ତୁ ବର୍ତ୍ତମାନ ଜେରା ହେବା ଭଲ ଅବସ୍ଥାରେ ନାହିଁ ।

ମୁଁ ଜେରା କରିବାକୁ ଆସିନାହିଁ । କେବଳ ଦେଖିବାକୁ ଆସିଛୁ ।

ଆସନ୍ତୁ ।

ସୁନନ୍ଦାର ପାଦ ଘର ଭିତରକୁ ପ୍ରବେଶ କରିବା ପୂର୍ବରୁ ଯେପରି ପକ୍ଷାଘାତରେ ଅଚଳ ହୋଇଯାଇଥିଲା ।

ସମରବଲ୍ଲଭ କହିଲେ, ମୁଁ ଅନୁସନ୍ଧାନ କରୁଥିବା ଲୋକଟିକୁ—ଜୀବନ୍ତ ହେଉ କି ମୃତ ହେଉ ପାଇ ସାରିଛି, ଏଥର ତୁମେ ଖୋଜୁଥିବା ଲୋକଟିର ଅନ୍ୱେଷଣରେ ଲାଗି ପଡ଼ିବ । ଦୁହେଁ ଦୁହିଁଙ୍କୁ ଚାହିଁଲେ, ସୁନନ୍ଦାର ମୁହଁ ରକ୍ତଶୂନ୍ୟ । ବହୁ କଷ୍ଟରେ ସେ ପାଦ ଘୋଷାରି ଘୋଷାରି ମୁମୂର୍ଷୁ ଲୋକଟିର ନିକଟରେ ପହଞ୍ଚି ବେଡ୍ ସାଇଡ଼ରେ ଠିଆହେଲା । ଘର ଭିତରେ ଶବ୍ଦ ଶୁଣି ଲୋକଟି ଆଖିମେଲି ଧୀରେ ଧୀରେ ସମରବଲ୍ଲଭଙ୍କୁ ଲକ୍ଷ୍ୟ କଲା, ଶରୀରର ଅସମ୍ପୂର୍ଣ୍ଣତାରେ ଦୁଇ ହାତକୁ ଏକାଠି କରି ଧୀରେ ଧୀରେ ଉପରକୁ ଉଠାଇଲା । ସମରବଲ୍ଲଭ ଆବେଗରେ ତା' ହାତ ଧରି ପକାଇଲେ । ନର୍ସ ଆସି ପ୍ରଶ୍ନ କଲା "ପେସେଣ୍ଟର ନାମଟା କଣ କହିଲେ ?"—ସୁନନ୍ଦା ଏଥର ପାଟି ଖୋଲିଲା । କହିଲା, ସନ୍ଦୀପ ଚୌଧୁରୀ । ସମରବଲ୍ଲଭ ଅବାକ୍ ହୋଇ ଖାଲି ବିସ୍ଫାରିତ ଆଖିରେ ଚାହିଁ ରହିଲେ ସୁନନ୍ଦା ଆଡ଼େ ।

# ସେବକ ବାବୁ

ଦାଣ୍ଡ ଦରଜାରେ କିଏ ଖଟ ଖଟ କରୁଛୁ । ବର୍ଷା ବୋଧହୁଏ ଗ୍ରୁଡ଼ି ଯାଇଛୁ । ଝରକା ଉପରର ଛାଜା ଉପରୁ ବର୍ଷା ବିନ୍ଦୁ ତଳେ ଜମିଥିବା ପାଣି ଉପରେ ପଡ଼ି ଝପ୍ ଝପ୍ ଶବ୍ଦ କରୁଛୁ ।

ନିରଞ୍ଜନ ବାବୁ ଅଉଟିକେ ଦେହ ଉପରକୁ ଟାଣି ଆଣିଲେ ଗୁଦଗଟା । ଆଷାଢ଼ର ସନ୍ଧ୍ୟା । ସକାଳୁ ବର୍ଷା ଲାଗି ରହିଛୁ । ଶୀତ ଶୀତ ଲାଗୁଛୁ । କିଏ ଅଉ ଆସି ଏ ବର୍ଷାଭିଜା ସନ୍ଧ୍ୟାରେ ଦରଜାରେ ଆଘାତ କରୁଛୁ !! ଘରେ ସ୍ତ୍ରୀ ପିଲାଛୁଆ କେହି ନାହାନ୍ତି । ସ୍ତ୍ରୀଙ୍କର ପୁଅ୍ରୁ ବାହା ହେଉଛୁ । ଯାଇଛନ୍ତି କଟକ ।

ବିଛଣାରୁ ଉଠିଯାଇ କବାଟ ଖୋଲିବାକୁ ଇଚ୍ଛା ହେଉନାହିଁ । ଥରେ ଦୁଥର କବାଟ ବାଡ଼େଇ, କିଏ ଆସିଛୁ ପୁଣି ଫେରିଯିବ ତା ବାଟରେ । କିନ୍ତୁ···ନା···ଲୋକଟା ବୋଧହୁଏ ଜିଦ୍‌ଖୋର । ନ ଫିଟାଇଲେ ପର୍ଯ୍ୟନ୍ତ ବାଡ଼େଇ ଚାଲିଥିବ । ଅଗତ୍ୟା ଶୂଳୀକୁ ନେଲାଭଳି ଉଠିଲେ ନିରଞ୍ଜନବାବୁ । ବହୁ କଷ୍ଟରେ ଅନିଚ୍ଛା ସତ୍ତ୍ୱେ କବାଟ ଫିଟାଇଲେ । ବାହାରେ ହସ ହସ ମୁହଁରେ ଯୋଡ଼ ହସ୍ତ କରି ଛିଡ଼ା ହୋଇଛନ୍ତି ରାମନାରାୟଣ ବାବୁ ।

ନିରଞ୍ଜନ ବାବୁ ଅପ୍ରସ୍ତୁତ ହୋଇ କହିଲେ, "ଆରେ ଆରେ !! ଆପଣ ! ମୁଁ ଭାବିଲି ଛେଳି କି ଗାଈ ଗୋରୁ ହୋଇଥିବେ । କଥା କ'ଣ କି, ବର୍ଷା ବେଳେ ଏଇ ଆମ ବାରଣ୍ଡାରେ ଛେଳି ଏବଂ ଗାଈ ଗୋରୁଙ୍କ ଅବାଧ ପ୍ରବେଶ । ବିଚରା ଏ ବର୍ଷା ମାଡ଼ରୁ ରକ୍ଷା ପାଇବା ପାଇଁ ଉପରକୁ ଉଠି ଆସନ୍ତି । ଆଉ ତାଙ୍କର ଗୋଡ଼ ଖୁରା ବାଜି କବାଟ ଧଡ଼ ଧଡ଼ ହୁଏ" ।

ଠିକ୍ ଅଛି ଠିକ୍ ଅଛି । ଗାଈ ଗୋରୁ ମଧ୍ୟ ମଣିଷଙ୍କ ପରି ଜୀବନ ଶକ୍ତି ଧାରଣ କରିଛନ୍ତି । ଜଡ ନୁହନ୍ତି । ମତେ ଆପଣ ଗାଈ ଛେଳି ବୋଲି ଭୁଲରେ ଭାବିଦେଲେ କିଛି କ୍ଷତି ନାହିଁ । ରାମନାରାୟଣ ବାବୁଙ୍କ କଥାରେ ନିରଞ୍ଜନବାବୁ ଜୋରରେ ହସିଲେ । ଆଉ କୁଆଡ଼େ ଯାଉଥିଲେ ? ନାଇଁ ଆଉ ଯିବି କୁଆଡ଼େ, ଆପଣଙ୍କ ପାଖକୁତ ଆସିଛୁ—ଗାଈ ଛେଳିଙ୍କ ପରି ଆଶ୍ରୟ ନେବା ପାଇଁ ବାରଣ୍ଡାକୁ ଉଠି ଆସିଚି । ଏଥର ରାମନାରାୟଣ ହସିଲେ—ଆସନ୍ତୁ, ଆସନ୍ତୁ, ଆଉ ଥଟ୍ଟା କରନ୍ତୁନି । ମୋ ଭଳି ଅର୍ବାଚୀନ ପାଖରେ ପୁଣି କେଉଁ କାମ ପଡ଼ିଲା ?

ନିଜକୁ ଆଜ୍ଞା ଏତେ ନ୍ୟୂନ କରି ଦେଉଛନ୍ତି କାହିଁକି ? ଘରେ ପ୍ରବେଶ କରୁ କରୁ କହିଲେ ରାମନାରାୟଣବାବୁ ।

—ଆମେ ଅର୍ବାଚୀନ ନୋହୁଁତ ଆଉ କ'ଣ ? ଆପଣମାନେ ହେଲେ ଲୋକ-ସେବକ । ଭଗବାନଙ୍କ ପ୍ରତିନିଧି । ମାନବ କଲ୍ୟାଣ ନିମନ୍ତେ ଆପଣ କେତେ କ'ଣ ଜନ-ମଙ୍ଗଳ କାର୍ଯ୍ୟରେ ବ୍ୟସ୍ତ ରହୁଛନ୍ତି । ଆମେ ଆଉ କାହା ପାଇଁ କ'ଣ କରୁଛୁ ?

ରାମନାରାୟଣ ବାବୁ ହାତ ମଳି ମଳି ଉତ୍ତର ଦେଲେ, ଆପଣମାନେ ହେଲେ ସରକାରଙ୍କ ଦାୟିତ୍ୱସମ୍ପନ୍ନ କର୍ମଚାରୀ । ଅଫିସ କାର୍ଯ୍ୟରୁ ଫୁରସତ ମିଳିଲେ ତ ଅନ୍ୟ କାମ କରିବେ ! ସେଇ ଅଫିସ କାମ ହେଲେ ବି ସିଏ ଆଉ କାହାର କାମ ? ଆମମାନଙ୍କର ତ…

ଅଚ୍ଛା ଅଚ୍ଛା ପ୍ରଶସ୍ତି ବନ୍ଦ କରନ୍ତୁ । କୁହନ୍ତୁ ଏ ବର୍ଷା ପାଗରେ କି ଉଦ୍ଦେଶ୍ୟ ନେଇ ଆପଣଙ୍କର ଆଗମନ ?

—କହୁଛି ଆଜ୍ଞା । କଥା କ'ଣ କି ଆମ ଏ ପାଡ଼ାର ସେବା ସମିତି ତରଫରୁ ଆସନ୍ତା କାଲି ଏକ ଶ୍ରମଦାନ ଶିବିର କୁହନ୍ତୁ ବା ଏକ ଉତ୍ସବ କୁହନ୍ତୁ ଆୟୋଜନ କରାଯାଇଛି । ସମିତିର ସମ୍ପାଦକ ହିସାବରେ ସମସ୍ତଙ୍କୁ ଖବର ଦେବା ଭାର ମୋ ଉପରେ । ଆସନ୍ତା କାଲି ତ ରବିବାର, ଆପଣଙ୍କର ଆଉ କାମ କ'ଣ ? କାଲି ନିଶ୍ଚୟ ଯୋଗ ଦେବେ । ହଁ ଆଜିକାଲି ଲୋକଙ୍କ ମନରୁ ଧର୍ମଭାବ ଅଳ୍ପେ ଅଳ୍ପେ ଅପସରି ଯାଉଛି । ସେଥିପାଇଁ କୌଣସି ଧର୍ମ ଅନୁଷ୍ଠାନ କରିବାକୁ ହେଲେ ଅନ୍ୟ କିଛି ଆକର୍ଷଣ ରଖିବାକୁ ପଡ଼ୁଛି । ନଚେତ୍ ଅନୁଷ୍ଠାନରେ ଯୋଗ ଦେବା ପାଇଁ ଖୁବ୍ କମ୍ ସଂଖ୍ୟକ ଲୋକ ଆସୁଛନ୍ତି । ଏଇ ଆମ ସମିତିର ଲୋକ ମଧ୍ୟ କେହି ଆସୁ ନାହାନ୍ତି । ତେଣୁ…

—ତେଣୁ ! କ'ଣ କିଛି ନାଚ ଗୀତର ବ୍ୟବସ୍ଥା କରୁଛନ୍ତି ? ନା କ'ଣ ?

—ନା ନା…ନାଚ ଗୀତ ନୁହେଁ, ଏକ ଭୋଜି ଭାତର ବ୍ୟବସ୍ଥା, ଆଉ ସେଥିପାଇଁ ଜଣଙ୍କ ପିଚ୍ଛା ତିରିଶଟଙ୍କା ଲେଖାଏଁ ରଖା ହୋଇଛି ।

—ବାଃ ବାଃ, ଏଇ ପନ୍ଥା ଅନୁସରଣ କରିଛନ୍ତି । କିନ୍ତୁ, ଜୋର ଜବରଦସ୍ତି କ'ଣ ଆପଣ ଲୋକଙ୍କ ମନରେ ଧର୍ମ ଭାବ ଆଣି ପାରିବେ ?

—କ'ଣ ଆଉ କରାଯିବ ? ସମିତିଟାକୁ ତ ବଞ୍ଚାଇ ରଖିବାକୁ ପଡ଼ିବ ।

—ହଉ ହଉ । ତା'ହେଲେ ମୋର ତିରିଶଟଙ୍କା ନେଇ ଯାଆନ୍ତୁ । ଭୋଜି ଖାଏ କି ନ ଖାଏ । ମୁଁ କିନ୍ତୁ ନିଶ୍ଚୟ ଯିବ ।

—ହଉ, ମୁଁ ଆସୁଛି ତାହେଲେ । ନମସ୍କାର !

—ନମସ୍କାର ।

ରମାକାନ୍ତ ବାବୁ ବାରଣ୍ଡାରୁ ବଡ଼ ଛତିଟି ଉଠାଇ ନେଇ ଚାଲିଗଲେ । ନିରଞ୍ଜନ ବାବୁ ମନେ ମନେ ହସିଲେ । ଧର୍ମଭୀରୁ ଲୋକଙ୍କ ମନରେ ଜଗାଇ ଦେବା ପାଇଁ ରମାକାନ୍ତ ବାବୁଙ୍କ ଭଳି ନିଃସ୍ୱାର୍ଥପର ଲୋକ କି ଝଡ଼ କି ବର୍ଷାରେ କି ଅକ୍ଳାନ୍ତ ପରିଶ୍ରମ କରୁଛନ୍ତି !

ପରଦିନ ବର୍ଷା ଛାଡ଼ିଗଲା । ସୋରିଷ ଫୁଲ ରଙ୍ଗର ଖରା ଗଛ ପତ୍ରରେ ନେସି ହୋଇଗଲେ । ନୂତନ ଆଲୋକ ସ୍ପର୍ଶରେ ନିରଞ୍ଜନ ବାବୁଙ୍କର ଦେହ ମନ ସତେଜ ହୋଇ ଉଠିଲା । ଅନ୍ତରର ନିଭୃତ କୋଣର ସବୁଜ ଡାଳରେ ଉତ୍ସାହର ମୁକୁଳଟିଏ ତାର କଅଁଳ ପାଖୁଡ଼ା ମେଲି ହସିବାରେ ଲାଗିଲା ।

ନିରଞ୍ଜନ ବାବୁଙ୍କର ଆଜି ଅଫିସ ନାହିଁ । ସେ ଶୀଘ୍ର ଶୀଘ୍ର ନିଜର ନିତ୍ୟକର୍ମ ସାରିଦେଇ ଧଳା ଫିନ୍‌ଫିନ୍ ଧୋତି ଏବଂ ପଞ୍ଜାବୀ ପିନ୍ଧି ରାଧାକୃଷ୍ଣ ମନ୍ଦିର ଆଡେ ବାହାରିଗଲେ । ସେହି ମନ୍ଦିରରେ ସେବା ସମିତି ତରଫରୁ ଉତ୍ସବ ପାଳିତ ହେଉଛି । ମନ୍ଦିରର ଗୋଟିଏ ପାଖରେ ପାଚେରୀ ଭାଙ୍ଗି ପଡ଼ିବାରୁ ତା'ର ପୁନଃନିର୍ମାଣ କରାହେଉଛି । ଗତ ଦୁଇଦିନ ହେଲା କାମ ବନ୍ଦ ଥିଲା ବର୍ଷା ଯୋଗୁଁ । ଆଜି ବି ମୂଲିଆମାନେ କାମ କରିବେ ନାହିଁ, ସମିତିର ସଭ୍ୟମାନେ ସେମାନଙ୍କର କାମ କରିବେ । ଇଟା ବୋହିବେ, ସିମେଣ୍ଟ ବାଲି ଫେଣ୍ଟିବେ । ମିସ୍ତ୍ରୀ ନିକଟକୁ ଇଟା ସିମେଣ୍ଟ ପାଣି ସବୁ ଯୋଗାଇ ଦେବେ । ମୂଲିଆମାନେ ଏଇ ମନ୍ଦିରରେ ଆଜି ଉପସ୍ଥିତ ରହିବେ, ବସି ବସି ବିଭିନ୍ନ ବକ୍ତାମାନଙ୍କଠାରୁ ଧର୍ମ ଉପଦେଶ ଶୁଣିବେ । ଭଜନରେ ଯୋଗଦେବେ । ଶେଷରେ ଭୋଜି ଖାଇ, ଯେ ଯାହା ଘରକୁ ସେଦିନର ମଜୁରି ନେଇ ଯିବେ ।

ନିରଞ୍ଜନ ବାବୁଙ୍କ ମନକୁ କଥାଟା ବେଶ୍ ପାଇ ଯାଇଥିଲା । ସମିତିର ପ୍ରାୟ ସବୁ ସଭ୍ୟଙ୍କୁ ସେ ଚିହ୍ନିଛନ୍ତି । ସମସ୍ତେ କେତେବେଳେ କେମିତି ତାଙ୍କ ଘରକୁ ଆସିଛନ୍ତି । ସେମାନଙ୍କ ସମ୍ମୁଖରେ ସେ ନିଜକୁ ଅତି ହୀନ ମନେ କରନ୍ତି । ସଂସାର କାର୍ଯ୍ୟ ତୁଲାଇ ପୁଣି ଅଫିସ କାମ ସାରିବା ପରେ ତାଙ୍କ ସମୟ ସବୁ ଶେଷ ହୋଇଯାଏ । ବ୍ୟାଙ୍କରେ ପଇସା ସଞ୍ଚିଲ ପରି ସମୟକୁ ତ ଆଉ ସଞ୍ଚୟ କରି ହେବନି ! ତା ବାଟରେ ସେ ସରିଯିବ । ଅଧାରୁ ବେଶୀ ବୟସ ତାଙ୍କର କଟି ଗଲାଣି, ଅବସର ନେଲାପରେ ସେ ହୋଇ ଯାଇଥିବେ ବୁଢ଼ା, ବଳ ବୟସ ତୁଟିଯିବ । କାମ କରିବା ଶକ୍ତି ନଷ୍ଟ ହୋଇଯିବ, ମନର ବଳ ମଧ୍ୟ ଭାଙ୍ଗି ପଡ଼ିଥିବ, ଅଣ୍ଟା ବଙ୍କା କରି ଥରଥର ହାତରେ ବାଡ଼ିଧରି ସେ କାହାର କେଉଁ କାମ କରିବାକୁ ବାହାରି ପଡ଼ିବେ ? ସକ୍ଷମ ବା ହେବେ କିପରି ? ତାଙ୍କ ନିଜ ପାଇଁ ତ ପାଖଟା ଲୋକ ଦରକାର ହେବେ । ସମିତିର ଲୋକମାନେ କେନ୍ତୁ ଚତୁର । ବାଲ୍ୟକାଳରୁ ଧର୍ମ ଧନ ସଞ୍ଚୟ କରୁଛନ୍ତି । କେଜାଣି ଭବିଷ୍ୟତରେ ଆଉ ଅବସର ମିଳିବ କି ନାହିଁ । ତେଣୁ

ସେମାନଙ୍କ ଆଗରେ ନିରଞ୍ଜନ ବାବୁ ସିଧା ହୋଇ ଛିଡ଼ା ହେବାକୁ କୁଣ୍ଠିତ ମନେ କଲେ । କେତେ ଅଳ୍ପ ବୟସର ଯୁବକଗୁଡ଼ିଏ ! କେତେ ବଡ଼ ବଡ଼ କାମ କରୁଛନ୍ତି ! ଭଜନ, କୀର୍ତ୍ତନ, ଲୋକସେବା ।

ଆଜି ମନ୍ଦିରରେ ପହଞ୍ଚି ସେମାନଙ୍କୁ ଦେଖିଲା ମାତ୍ରେ ତାଙ୍କ ମନ ଉତ୍ଫୁଲ୍ଲ ହୋଇ ଉଠିଲା । ସମସ୍ତଙ୍କ ମୁହଁରେ ସକାଳ ସୂର୍ଯ୍ୟର ଆଭା, ଫୁଲ ପରି ଶୁଭ୍ର ସତେଜ ।

ରାମନାରାୟଣ ବାବୁ ବହୁ ପୂର୍ବରୁ ଆସି ସାରିଥିଲେ । ସମିତିର ଅନେକ ସଭ୍ୟ, ସ୍ତ୍ରୀ ପୁରୁଷ, ନିଜ ନିଜର ପରିବାର ଧରି ଉପସ୍ଥିତ ହୋଇଥିଲେ । ମନ୍ଦିର ବେଢ଼ା ମଧ୍ୟରେ ବିରାଟ ବଗିଚା । ବଡ଼ ବଡ଼ ଆମ୍ବ, ପିଜୁଳି, ଲିଚୁଗଛ । ଗୋଟିଏ କୋଣକୁ ଜାଗା ପରିଷ୍କାର କରାଯାଇ ସେଠାରେ ଭୋଜିର ଆୟୋଜନ କରାଯାଇଛି । ରାନ୍ଧୁଛନ୍ତି ସେହି ସମିତିର କେତେକ ସଭ୍ୟ । ସ୍ତ୍ରୀଲୋକମାନେ ବଡ଼ ବଡ଼ ଡେକ୍‌ଚି, ବାଲ୍‌ଟି ମାଜିବାରେ ବ୍ୟସ୍ତ । ନିଜ କାମ ନିଜେ କରୁଛନ୍ତି । ପୂଜାର୍ଥି ଗୃହର ଅସିନାହାନ୍ତି ।

ରାମନାରାୟଣ ବାବୁ ଏପାଖ ସେପାଖ ହୋଇ ସବୁକଥା ତଦାରଖ କରୁଛନ୍ତି । ମନ୍ଦିର ଚଉତରା ଉପରେ ବଡ଼ ଦରି ବିଛା ହୋଇଛି । ରାମନାରାୟଣ ବାବୁଙ୍କ ଅନୁରୋଧ କ୍ରମେ ସମସ୍ତେ ଯାଇ ସେଠାରେ ବସିବେ । ବର୍ତ୍ତମାନ ଭଜନ ଆରମ୍ଭ ହେବ । ଧାଡ଼ି ହୋଇ ପଛକୁ ପଛ ସମସ୍ତେ ବସିଛନ୍ତି । ଶେଷ ଧାଡ଼ିରେ ମୂଳଆ ମିସ୍ତ୍ରୀମାନେ ବସିଛନ୍ତି । ଭଜନ ଆରମ୍ଭ ହେଲା । କି ସୁନ୍ଦର ଭଜନର ସ୍ୱର ! ନିରଞ୍ଜନ ବାବୁ ନିଜକୁ ଭୁଲିଗଲେ । ଭୁଲିଗଲେ ତାଙ୍କର ସ୍ତ୍ରୀ ପିଲାଙ୍କର ସଂସାର । କେବଳ ଆଖି ଆଗରେ ବଂଶୀ ଧରି ସୁମଧୁର ତାନରେ ଯେପରି ପାଦ ଛନ୍ଦ ଛନ୍ଦ ନାଚୁଛନ୍ତି ସ୍ୱୟଂ ଶ୍ରୀକୃଷ୍ଣ, କହୁଛନ୍ତି ମତେ ଭୁଲି ଏତେ ଦିନ ଧରି ରହିଥିଲୁ କେଉଁଠି ? ଆ ! ମୋ ପାଖକୁ ଆ । ମୁଁ ହିଁ ତୋର ସବୁ । ପିତା ମାତା, ସଖା ସହୋଦର, ସର୍ବସ୍ୱ ।

ନିରଞ୍ଜନ ବାବୁଙ୍କ ହାତରେ ହଳେ ଗିନି ଧରେଇ ଦେଇଥିଲେ ରାମନାରାୟଣ ବାବୁ । ସେ କ୍ରମଶଃ ଜୋରରେ ଗିନି ବଜାଇ ଆଖି ମୁଦି ଭଜନ ସହିତ ତାଳ ମିଳେଇ ଚାଲିଲେ । କିଛି ସମୟ ପରେ ରାମନାରାୟଣ ବାବୁ ତାଙ୍କୁ ହଲେଇ ଦେଲେ ! କ'ଣ ଆପଣ ଏତେ ଭୋଳ ହୋଇଗଲେ !! ଭଜନ ତ ଶେଷ ହୋଇ ଗଲାଣି । ଆପଣ କ'ଣ ଗିନି ବଜାଇ ଚାଲିଥିବେ ? ସତେ ତ ! ନିରଞ୍ଜନବାବୁ ଆଖି ଖୋଲି ଚାହିଁଲେ । ସେ ଯୁଆଡ଼େ ଉଠି ଚାଲିଗଲେଣି । ଅନ୍ୟ କାମରେ ଲାଗି ପଡ଼ିଲେଣି । ସେଇ ଏକା ଦରି ଉପରେ ବସି ଗିନି ବଜାଉଛନ୍ତି କେବଳ ।

ନିରଞ୍ଜନ ବାବୁ ଉଠି ପଡ଼ିଲେ । ଦେଖିଲେ ଅନ୍ୟ ସଭ୍ୟମାନେ ପାଚେରୀ ଗଢ଼ା କାମରେ ଲାଗିପଡ଼ିଛନ୍ତି । ଧାଡ଼ିବାନ୍ଧି ଛିଡ଼ା ହୋଇ ଜଣଙ୍କ ହାତକୁ ଆଉ ଜଣେ ପାଣି

ଡାଲାଟି ବଢ଼ାଇ ଦେଉଛି । ଶୂନ୍ୟେ ଶୂନ୍ୟେ ଡାଲିଟି ଚାଲି ଯାଉଛି ହାତକୁ ହାତ ହୋଇ । କାହାକୁ କଷ୍ଟ ଜଣା ପଡୁନାହିଁ । ଏକ ହୋଇ କାମ କଲେ କେତେ ସହଜରେ ହୋଇଯାଏ ! ସେ ଭିଡ଼ଭିତରେ ଯାଇ ସେହି ଧାଡ଼ିରେ ନିଜକୁ ସାମିଲ କରିଦେଲେ । ସେ ଭୁଲିଗଲେ ସେ ଜଣେ ବଡ଼ ସରକାରୀ କର୍ମଚାରୀ । ରାତି ପାହିଲେ ହଜାରେ ଲୋକ ତାଙ୍କୁ ସଲାମ ଠୁକନ୍ତି । ଆଜି ସେ ମୂଲିଆ ଭଳି ଏଠାରେ ଖଟୁଛନ୍ତି । କି ଅମୃତମୟ ଆନନ୍ଦ ଏଥିରେ !

ଦୁନିଆରେ କେହି ଶ୍ରେଷ୍ଠ ନୁହନ୍ତି । କୌଣସି କାମ ଶ୍ରେଷ୍ଠ ନୁହେଁ । ଶ୍ରେଷ୍ଠ ମୂଲାଟିରେ ଯେପରି ବାସନା ଭରିଥାଏ, ଶ୍ରେଷ୍ଠ କାମରେ ମଧ୍ୟ ମହତ୍ତ୍ୱ ପଣିଆର ଅନେକ ଝଲମଲ କରୁଥାଏ—ଝାପଟିଏ ପରି । ମଣିଷ ତା'ର ରୂପ ଭେକ, ଦୌଲତର ଗାରିମାରେ ବଡ଼ ହୁଏନି, ବଡ଼ ହୁଏ ତା'ର ହୃଦୟ ବଡ଼ ହେଲେ ।

କାମ ଚାଲିଛି । ପଇଁଷଠି ଛଷଠି ବର୍ଷର ବୁଢ଼ା ମୂଲିଆଟାଏ ଇଟା ଟୋକେଇ ଟାଣିକୁ ଗଲା ବେଳକୁ ଜଣେ ଯୁବକ ତା'ର ହାତ ଧରି ଅଟକାଇ ଦେଲେ । କହିଲେ "ତମେ ବସ । ଆଜି ଆମେ କାମ କରିବୁ ।"

ବୁଢ଼ା ହସିଦେଇ ବସି ପଡ଼ିଲା ଯାଇ ପିଜୁଳି ଗଛକୁ ଆଉଜି । ପାକୁଆ ପାଟିରେ ତା'ର ହସ । ଜୀବନଯାକ ମୂଲିଆ ହୋଇ ଖଟି ଆସିଛି । ଘଣ୍ଟାଏ ତା ହାତ ଥୟ ଧରିନି । କେଉଁ କାମଟା କରିଦେବ ବୋଲି ଖୁଜୁବୁଜୁ ହୋଉଛି । ଗୋଟିଏ ଦିନ ହାତଗୋଡ଼ ନକରି ବିଶ୍ରାମ ନେଇଲେ କ'ଣ ହେବ, କାଲିତ ଫେର ରାତି ପାହିଲା ବେଳକୁ ମୁଠାଏ ପଖାଳ ପେଟରେ ପକାଇ କାମକୁ ଦଉଡ଼ିବ । ଗୋଟିଏ ଦିନ ହାଇମାରି ଶୋଇ ପଡ଼ିଲେ ଲାଭ କ'ଣ ହେବ !

ଏଇ ଯେଉଁମାନେ ଆଜି ଆସି ଏଠି ମନ୍ଦିର ପାଚେରୀ ଖୋଳି ଯାଉଛନ୍ତି ବୋଲି ମତାମତ କରୁଛନ୍ତି, ସେଇ ପାଚେରୀ ପ୍ରଥମେ ତାରି ହାତରେ ତିଆରି ହୋଇଥିଲା । ଏମାନେ ଜନ୍ମ ହୋଇଥିବେ କି ନଥିବେ । ତା'ର ଏବଂ ତା ସଙ୍ଗୀ ମୂଲିଆ ଭାଇଙ୍କ ହାତରେ ମନ୍ଦିର ନିଅଁ ଖୋଳା ହେଲା । ବେଢ଼ା ବୁଲିଲା । ମନ୍ଦିର ଉପରେ କଳସ ଓ ଚକ୍ର ବସି ବାନା ଉଡ଼ିଲା । ଦିଅଁ ପ୍ରତିଷ୍ଠା ହେଲେ । ସବୁ ହୋଇଛି । ଆହୁରି ହେବ । ଏମାନେ କ'ଣ ତାକୁ ବସାଇ ଦେଇ କାମରେ ଲାଗିଛନ୍ତି ! ଲାଗନ୍ତୁ । କାମ କରିବାକୁ ତାକୁ ବେଳ ନାହିଁ । ମନ ହମ ହମ ହେଉଛି । ନ ଗୃଡ଼ିଲା ଗଜ ଖାଇବା ପାଇଁ ଯେପରି ମନ ଉଚ୍ଛନ୍ନ ହୁଏ । ଜିଭତଳ ଲାଳେଇ ଯାଏ । ପାଣି ନିଗିଡ଼ି ପଡ଼େ ଓଠରୁ । ଦିନଟାଏ କଣ ବଅନ୍ତୁ । ମନ ଓରମାନ ମେଣ୍ଟି ଯାଉ । କାମକଲେ ଯେପରି ଲାଗେ ସେ କୁତୁହଳ ମନରୁ ଅପସରି ଯିବ । ଲାଗେ ଲାଗେ ଚାରି ପାଞ୍ଚ ଦିନ କଲେ ମନ ଛାଟ କରିଦେବ । ବୁଢ଼ା ମନେ ମନେ ଏ ସେଣ୍ଟ କୁଣ୍ଡୀ

ସିନ୍ଧା ସେବକ ବାବୁ ମାନଙ୍କୁ ତଥାପି ଆଶୀର୍ବାଦ ଦେଉଥିଲା । ବଡ଼ ଘରେ ଜନ୍ମିଛନ୍ତି । ତା ଭଲ ଦାନ ବୁଝନ୍ତି । କେଉଁ ଦୁଃଖରେ ତା'ଭଳି ନଇଁ ଖଟିବାକୁ ଆସିବେ !

ଏଇ ସହରରେ ଯେତେ ସ୍କୁଲ, କଲେଜ, ସିନେମା ଘର, ଅଫିସ ଘର, ସବୁ ଯେ ହେଉଛି ତା ପାଇଁ ମୂଲିଆଙ୍କ ଭିଇସାଙ୍ଗେ ମିଳି । ଏଇ ପିଲାମାନେ ଯେଉଁ ସ୍କୁଲ କଲେଜରେ ବସି ପଢ଼ି ବାବୁ ଯାକି ବାହାରି ଆସୁଛନ୍ତି, ସେଥି ସବୁଥିରେ ପ୍ରତିଟି ଇଟାରେ ତା' ହାତର ସ୍ପର୍ଶ ରହିଛି । ଝାଳର ଗନ୍ଧ ମିଶିଛି । ଉତପ୍ତ ନିଃଶ୍ୱାସରେ ଝାଳ ହୋଇଛି । ଆଜି ଦିନଟିଏ ହେଲେବି ତା' ପରିଶ୍ରମର ଋଣ ପରିଶୋଧ କରି ଦିଅନ୍ତୁ ।

ଦ୍ୱିପ୍ରହର ହେଲା । ସମସ୍ତେ ମନ୍ଦିର ପୋଖରୀରେ ଗୋଡ଼ ହାତ ଧୋଇ ଆସି ଚଉତରା ଉପରେ ଏକାଠି ଦେଖାଦେଲେ । ଦରି ପାଲ ଚଉଡ଼ା ହୋଇ ପଡ଼ିଲା । ଖଳିପତ୍ର ପଡ଼ିଲା । ତା' ଉପରେ ପାଣି ଛିଞ୍ଚି ଛିଞ୍ଚି ଜଣେ ସେବକ ବାବୁ ଏମାନଙ୍କୁ ସେମୁଣ୍ଡ ବୁଲି ଆସିଲେ ।

ନିରଞ୍ଜନ ବାବୁ ଗୃହପଟେ ଫେରି ଆସିଲେ । ମୂଲିଆ, ମିସ୍ତ୍ରୀ ଧାଡ଼ିରେ ବସିଛନ୍ତି । ତାଙ୍କର ମନେହେଲା କୋଠିଏ ଯେମିତି କାହାକୁ ସେ ଧାଡ଼ିରେ ଦେଖି ପାରୁ ନାହାନ୍ତି । କିଏ ଜଣେ ଯେପରି ବାଦ୍ ପଡ଼ି ଯାଉଛି । ହଁ ତ···ସେଇ ବୁଢ଼ାଟିତ ନାହିଁ । ପିଜୁଳି ଗଛ ମୂଳେ ବିଶ୍ରାମ ନେଉଥିଲା । ନିରଞ୍ଜନ ବାବୁ ସମସ୍ତଙ୍କ ଅଗୋଚରରେ ବଗିଚା ଆଡ଼କୁ ଆଗେଇ ଗଲେ । ତାଙ୍କ ଅନୁମାନ ସତ୍ୟ । ହଠାତ୍ ଆଜିର ନୁହେଁ ଅନେକ ଦିନର କ୍ଲାନ୍ତି ମେଣ୍ଟାଉଛି ବୁଢ଼ାଟି । କ୍ରମିକ ଜୀବନର କ୍ଲାନ୍ତି, ଯା'ର ଶେଷ ନାହିଁ । ସେ ଯାଇ ତାକୁ ହଲାଇଦେଲେ । ନିଘୋଡ଼ ନିଦରେ ସେ ଶୋଇ ଯାଇଛି ।

ଧଡ଼ପଡ଼ ହୋଇ ଉଠି ବସିଲା ବୁଢ଼ା । ଅପ୍ରସ୍ତୁତ ହୋଇ କହିଲା, ବସୁ ବସୁ ଟିକିଏ ଆଖି ଲାଗିଗଲା ଆଜ୍ଞା, ରାତିସାରା ଘରେ ଶୋଇ ପାରିନି । ମଶାଗୁଡ଼ା ଗଣ ଗଣ ହୋଇ କାମୁଡ଼ି ପକାଉଛନ୍ତି, ରାତି ଅନିଦ୍ରା ହୋଇ ଏ ବଗିଚାରେ ଏଠି ଆସି କାମ କରିବା କି କଷ୍ଟ ଆଜ୍ଞା, ଶରୀର ପାଉ ନାହିଁ ତା ମନକୁ ଆଖି ଲାଗି ଯାଉଛି । ଅଟୋଳିଆ ନିଦ ଆସି ଦୁଇ ଆଖି ପତାରେ ବୋଝ ହୋଇ ଯାଉଛି ।

ନିରଞ୍ଜନ ବାବୁଙ୍କ ମନ ଦୁଃଖରେ ମର୍ମାହତ ହୋଇଗଲେ । ତଥାପି ମୁହଁରେ ହସ ଫୁଟାଇବାକୁ ହେଲା । ଏ ଅକାରଣ ଦୁଃଖ କରି ସେ କାହାର କେଉଁ କଷ୍ଟ ଦୂର କରି ପାରିବେ ! ଆଜି ଏଠି ଏଇ ବାବୁମାନେ ହଇଚଇ କରୁଛନ୍ତି । ସଞ୍ଜବେଳକୁ କେହି କୁଆଡେ ନଥିବେ । କାଲି ରାତି ପାହିଲା ବେଳକୁ ପୁଣି ଏଇ ବୁଢ଼ା, ସ୍ତ୍ରୀ, ଯୁବକ, ବାଳକ ଆସି କାମରେ ଲାଗିବେ । ରକ୍ତକୁ ପାଣି କରି ଖଟିବେ । ମନ୍ଦିର ଗଢ଼ିବେ । ସ୍କୁଲ, କଲେଜ, ଡାକ୍ତରଖାନା ସବୁ ତୋଳିବେ । ଦିନକ ପାଇଁ ତାଙ୍କ ପରିଶ୍ରମ ଅନ୍ୟକୁ ଦେଇ-

ଦେଲେ ନିଶ୍ଚିନ୍ତ ହୋଇପିବେ ନାହିଁ । ଯାହା ଜୀବନ ତାଙ୍କୁ ଏମିତ ଖଟିବାକୁ ପଡ଼ିବ । ସେମାନଙ୍କର ଜୀବନ ହେଲା ଶ୍ରମ ।

ନିରଞ୍ଜନବାବୁ ବୁଢ଼ାର ହାତ ଧରି ତାକୁ ଉଠିବାରେ ସାହାଯ୍ୟ କଲେ । ନମ୍ର ସ୍ୱରରେ କହିଲେ, ତମେ ଏଠି ଶୋଇ ପଡ଼ିଛ । ତେଣେ ଖାଇବା ପାଇଁ ପଙ୍ଗତ ପଡ଼ିଲଣି । ଆସ, ଆସ ।

—ଚାଲ ବାବୁ, ଚାଲ । ବୁଢ଼ା ଲକ୍ଷ୍ମଣ ଏବଂ କୁଣ୍ଠିତ ପଦରେ ଆସି ଧାଡ଼ିରେ ବସିଲା ।

ଅରୁଆ ଅନ୍ନ, ହରଡ ଡାଲି, ଗୋଟିଏ ପାଣ୍ଡିଆ ତରକାରି ସାଙ୍ଗକୁ କଖାରୁ ଖଟା, ବେଶ୍ ସ୍ୱାଦୁଯୁକ୍ତ ହୋଇଛି । ସମସ୍ତେ ପେଟ ଭରି ଖାଇଲେ । ପରଶୁଆଳିଙ୍କ ମଧ୍ୟରେ ଥିଲେ ନିରଞ୍ଜନ ବାବୁ । ଯାହାହେଉ, କିଛି କାମ ତାଙ୍କ ଦ୍ୱାରା ହୋଇପାରୁଛି । ଭବିଷ୍ୟତରେ ଆଉ ସୁଯୋଗ ମିଳି ନପାରେ । ସମସ୍ତଙ୍କ ଅନୁରୋଧ ଏଡ଼ାଇ ଦେଇ ସେ ପଙ୍ଗତରେ ବସି ନାହାନ୍ତି । ଡାଲି ବାଲ୍‌ଟି, ଅନ୍ନ ବାଲ୍‌ଟି ଧରି ଧାଉଁଛନ୍ତି ଏମୁଣ୍ଡରୁ ସେମୁଣ୍ଡ !

ସେଦିନର ଉତ୍ସବ ସରିଲା । ସୂର୍ଯ୍ୟ କରେଣ ମଉଳାଣ ପଡ଼ି ଆସିଲା । ସମସ୍ତେ ପୁଣି ଡେଉରୀ ଉପରେ ଧୂପକାଠି ଜଳାଇ ପ୍ରାର୍ଥନା ସାରି ଗୋଟିଏ ଗୋଟିଏ ପରସ୍ପରଠାରୁ ବିଦାୟ ନେଲେ । ଧିରେ ଧିରେ ସେଇ ପୋଲ ପଡ଼ିଆ ମଝି ଦେଇ ଅନ୍ଧାର ଗଲେ ଏ ଯାଗ ସେଦିନ ଶେଷ ହୋଇ ।

କିଛିଦିନ ଏହାପରେ ବିତି ଗଲାଣି । ନିରଞ୍ଜନ ବାବୁ ବଡ ଉତ୍କଣ୍ଠିତ ଚିତ୍ତରେ ଆଉ ଗୋଟିଏ ଏପରି ଦିନକୁ ଅନାଇଛନ୍ତି । ସବୁ ମୁହୂର୍ତ୍ତିରେ ଆଶା କରୁଛନ୍ତି କେହି ଯଦି ତାଙ୍କ ପାଖକୁ ଆସି ଡାକନ୍ତେ ! ସେଦିନ ସେହି ମଧୁର ପରିବେଶରେ ତାଙ୍କୁ ମିଳିଥିବା ନୂତନ ସ୍ୱର୍ଗୀୟ ଆନନ୍ଦକୁ ଜାଣିବୁଏ ପାଇବା ପାଇଁ ଆଉ ଥରେ ତାଙ୍କ ମନ ବ୍ୟାକୁଳ ହୋଇ ଉଠୁଛି ।

ରାସ୍ତାରେ ଥରେ ଦୁ'ଜଣ ମଜ୍ୟୁରଙ୍କ ସଙ୍ଗେ ହଠାତ୍ ଦେଖା ହୋଇଗଲେ । ନିରଞ୍ଜନ ବାବୁ ସେମାନଙ୍କୁ ଦେଖି ଆନନ୍ଦରେ ଦ୍ରୁତକୁଳ ଉଠିଲେ । ହସି ହସି ପ୍ରଶ୍ନ କଲେ, କ'ଣ ଆଉ ଖବର ? ପୁଣି ଆଉ କେବେ ହେଉଛି ତୁମର ଶ୍ରମଦାନ ଶିବିର ? ପ୍ରତି ନମସ୍କାର କରି ସେମାନେ ଉତ୍ତର ଦେଲେ, "ନାହିଁ ଆଜ୍ଞା । ଏବେ ଆଉ ନୁହେଁ । ଗୋଟାଏ ହୋଟେଲରେ କାମ୍ଦେଲୁ ଦିନା, ଦେହରୁ ଦରଜ ଛାଡ଼ ନାହିଁ ।"

ନିରଞ୍ଜନ ବାବୁ ଚମକି ପଡ଼ିଲେ, କଣ ଇଏ ଶୁଣୁଛନ୍ତି ଏମାନଙ୍କ ମୁହଁରୁ !! ଏମାନେ ସେବକ ବାବୁ । କାମରେ ଏମାନଙ୍କର ଆନନ୍ଦ । ସେ ତ ଏମିତର ପଡ଼ୀ ନୁହନ୍ତି ।

କିନ୍ତୁ ସେବା କରିବାର ଆନନ୍ଦ ଟିକକ ଏ ପର୍ଯ୍ୟନ୍ତ ତାଙ୍କ ମନରୁ ଅପସରି ଯାଇନାହିଁ । ବିଜୁଳି ଚକ୍ କରି ମାରିଦେବା ପରି ସ୍ମୃତି ଭିତରେ କି ଏକ ମୂର୍ଖ ଶିହରଣ ଖେଳି ଯାଉଛି ସେଦିନ କଥା ମନେ ପଡ଼ିଲେ । ଅଥଚ, ଅସଲ ସେବକ ବାବୁମାନଙ୍କ ଦରକ ଗୁଡ଼ିକ ଦେହରୁ !! ଏମାନେ ତେବେ କ'ଣ ସେବା କରୁନଥିଲେ କି ? ଅଭିନୟ କରୁଥିଲେ ସେବା କରିବାର !!

ନିରଞ୍ଜନ ବାବୁ ତାଙ୍କ ମନୋଭାବ ଗୋପନ ରଖି ତାଙ୍କ ସହ ଚାଲିଲେ । ସନ୍ଧ୍ୟା ହୋଇ ଆସୁଛି । ଅଫିସରୁ ଫେରି ଚା ପାନ ପରେ ସେ ଚାଲି ଚାଲି ରାମନାରାୟଣ ବାବୁଙ୍କ ଘର ଉଦ୍ଦେଶ୍ୟରେ ଯାଉଥିଲେ, ଏମାନେ ମଧ୍ୟ ସେଇଆଡ଼େ ଯାଉଛନ୍ତି । ଭଲ ହେଲା, ଗପ ସପ କରି ଯାଇ ହେବ । ନିରଞ୍ଜନ ବାବୁ ଖୁସି ହୋଇ ପ୍ରଶ୍ନ କଲେ, "ତମେମାନେ ଯାଉଛ କୁଆଡ଼େ ?

—ଆଜ୍ଞା, ସାର୍ଙ୍କ ଘରକୁ ।

—ରାମନାରାୟଣ ବାବୁଙ୍କ ଘରକୁ ?

—ହଁ, ସାର୍ ।

—ଆରେ ଆରେ, ମୁଁ ମଧ୍ୟ ସେଠାକୁ ଯାଉଛି । କ'ଣ ଆଜି ଅନ୍ୟ କିଛି ପ୍ରୋଗ୍ରାମ ହେଉଛି ନା କ'ଣ ?

—ହଁ ସାର୍, ଏକ ବକ୍ତୃତା ପ୍ରତିଯୋଗିତା ହେବ । ସେଇ ବିଷୟରେ ଆଜି ଆଲୋଚନା ହେବ ।

—ଭଲ ଭଲ, ପିଲାମାନଙ୍କ ମନରେ ମଧ୍ୟ ଆଗ୍ରହ ସୃଷ୍ଟି ହେବା ଆବଶ୍ୟକ । ଆଚ୍ଛା, ଏଥିପାଇଁ ପୁରସ୍କାରର କିଛି ବ୍ୟବସ୍ଥା ରଖିଛ ? —ହଁ ସାର୍, ପୁରସ୍କାର ବ୍ୟବସ୍ଥା ହୋଇଛି । କହି ଜଣେ ରାସ୍ତା ଉପରୁ ଗଡ଼ିଗଲା, ଅନ୍ୟ ସଙ୍ଗୀଟିର ହାତ ଟାଣି । କହିଲା, 'ଆସନ୍ତୁ ସାର୍ ଟିକିଏ ଚା' ପିଇଦେଇ ଯିବା, ଭୋକ ବି କଲାଣି । ପଇସା ଢେର୍ ଅଛି ପକେଟରେ । ଆଜି ବହୁତ ଚାନ୍ଦା ଆଦାୟ ହୋଇଛି ।'

ନିରଞ୍ଜନ ବାବୁ ଅବାକ୍ ହୋଇଗଲେ । ଏମାନେ ବୁଲି ବୁଲି ଅନ୍ୟମାନଙ୍କ ଠାରୁ ଜନହିତକର କାର୍ଯ୍ୟର ଦୁହାଇ ଦେଇ ଲୋକସେବା ନାଁରେ ଚାନ୍ଦା ଆଦାୟ କରୁଛନ୍ତି କଣ ନିଜର ଚା' ଜଳଖିଆ ଖର୍ଚ୍ଚ ଉଠାଇବା ପାଇଁ ! ବାଃ ଭଲ ସେବା କାର୍ଯ୍ୟ ତ ! ନିରଞ୍ଜନବାବୁ ଘୃଣାରେ ମୁହଁ ବୁଲାଇନେଲେ । କହିଲେ—ନା, ନା. ସେଥିପାଇଁ ମତେ ସମିତିର ଚାନ୍ଦା ଟଙ୍କା ଉପରେ ନିର୍ଭର କରିବାକୁ ପଡ଼ିବ ନାହିଁ । ସେ କାର୍ଯ୍ୟ ମୁଁ ଘରେ ତୁଲାଇ ଦେଇ ଆସିଛି । ମୁଁ ଆଗରେ ଯାଉଛି । ତମେ ମାନେ କାମ ସାରି ଆସ ।

ଯୁବକ ଦୁଇଟି ସ୍ତମ୍ଭୀଭୂତ ହୋଇଗଲେ । ମୁହଁ ଲଜ୍ଜାରେ ରକ୍ତିମ ହୋଇଗଲା, ଚୋର ଧରା ପଡ଼ିଲା ପରେ ତା ବେକ କୁକୁଡ଼ାର କଣ୍ଠା ବେକପରି ଯେପରି ତଳକୁ ଝୁଲିପଡ଼େ, ସେଇପରି ଅବସ୍ଥା ସେମାନଙ୍କର । ଅପ୍ରସ୍ତୁତ ହେଲା ଭଳି 'କହିଲେ—ନା' ଆଉ ସାର୍ । ସେମାନେ ଫେରି ଆସି ପୁଣି ତାଙ୍କ ସହ ମିଶି ଚାଲିଲେ ।

ସେବକ ବାବୁ······ସେବକ ବାବୁ ।···ରାସ୍ତା ମଝିରେ କିଏ ଜଣେ ଚିତ୍କାର କରୁଛି । ନିରଞ୍ଜନ ବାବୁ ଚମକି ପଡ଼ି ଅନାଇଲେ । ଆରେ !! ସେଇ ବୁଢ଼ାଟା, ମନ୍ଦିରରେ ଭିକ୍ଷାଧନ ଯିଏ ପିନ୍ଧୁଥିଲା ଗଛ ମୂଳେ ଶୋଇ ପଡ଼ିଥିଲା । ତା ନିକଟକୁ ଅଗେଇଗଲେ ନିରଞ୍ଜନ ବାବୁ ଘଟଣା କଣ ଜାଣିବା ପାଇଁ । ଯୁବକ ଦୁଇଜଣ ବାଧ୍ୟ ହୋଇ ତାଙ୍କୁ ଅନୁସରଣ କଲେ ।

ବୁଢ଼ା ଉପାସ୍ଥାନ ହୋଇ ବ୍ୟସ୍ତ ବିବ୍ରତ ହୋଇ ପଡ଼ୁଛି । ରାସ୍ତା ଧାରକୁ ମୁହଁ ମାଡ଼ି ପଡ଼ିଛି ବୁଢ଼ୀଟିଏ, ତା' ସ୍ତ୍ରୀ ହେବ ନିଶ୍ଚୟ । ପାଟିରୁ ଲାଳ ଗଡ଼ି ପଡ଼ୁଛି । ହାତ ଗୋଡ଼ ଛଟ ପଟ ହେଉଛି ବାତ ମାରିଲା ପରି । ଦେହ ମୁଣ୍ଡ ସବୁ ଘା ।

ଏମାନଙ୍କୁ ଦେଖି ବୁଢ଼ାର ଯେପରି ପିଣ୍ଡରେ ପ୍ରାଣ ପଶିଲା । ଆଶାରେ ଉଜ୍ଜ୍ୱଳ ହୋଇ ଉଠିଲା ନିଷ୍ପ୍ରଭ ଚକ୍ଷୁ । ଭୁଇଁ ଗଳାରେ ଥର ଥର ହୋଇ କହିଲା, ମୁଁ ଜାଣିଛି, ସେବକ ବାବୁ ! ଆପଣ ମୋ ଡାକ ଶୁଣି ନଆସି ରହି ପାରିବେନି । ସେଦିନ ସେଇ ମନ୍ଦିରରେ ମୋ ହାତରୁ ଇଟା ଛଡ଼ାଇ ନେଇ ବସାଇ ଦେଇଥିଲ, ଅଜ୍ଞ ଆଉ କଣ ମତେ ଅଣଦେଖା କରି ଫିଙ୍ଗିଦେଇ ଚାଲିଯିବ ? ଏଇ ଅଜ୍ଞା ମୋ ବୁଢ଼ୀ, ତାକୁ ଚେତନା ନାହିଁ ଜର । ହାମକୁ ଯାଇ ଧାରୁନି ଅଜ୍ଞା । ତାକୁ ନେଇ ଯାଉଥିଲି ଡାକ୍ତରଖାନା, ଦୁର୍ବଳ ଦେହ ନେଇ ଚାଲି ପାରିଲା ନାହିଁ । ଏଇଠି କଣ୍ଟୁଡ଼ି ହୋଇ ପଡ଼ିଲା । କଣ କରିବି ବାବୁ ! ତାକୁ ନେବି କେମିତି ?

—ଏଇଟା ଗୋଟାଏ କଷ୍ଟ କାମ କଣ ? ରିକ୍ସାରେ ନେଇଯାଅ । ଉତ୍ତର ଦେଲେ ବିରକ୍ତିରେ ସେବକ ବାବୁ ।

—ହଁ ବାବୁ ସେଇଆ ତେ···କିନ୍ତୁ···

—କିନ୍ତୁ କଣ ? ଜଲଦି ତାକୁ ନେଇଯିବନା···ନହେଲେ ବିପଦ । —ମୋ ଜୀବନ କଥା ମୁଁ କଣ ଆଉ ବୁଝୁନି । କଥା କଣ କି ବାବୁ ଚେତନା ହେବ ମୂଲ ଲଗିବାକୁ ଯାଇ ନାହିଁ, ଯାହା ପାଖରେ ଥିଲା ସବୁ ସରିଯାଇଛି । ରିକ୍ସାକୁ ଦେବାକୁ ପଇସାଟିଏ ନାହିଁ ବାବୁ, ଲଜ୍ଜାରେ ଝାଉଁଳି ପଡ଼ି ବୁଢ଼ା କହିଲା ।

—ଏଁ, ଅଗରୁ ତମେ ପଇସା କେଉଁଠୁ ଆଗରୁ ଯୋଗାଡ଼ି କରି ଆଣିନ୍ତନା··· ଡାକ୍ତରଖାନାକୁ ଆସିବ, ପଇସା ଦରକାର ବୋଲି ଜାଣିନ ?

—ବାବୁ, ମୁଁ ମୂର୍ଖ ଲୋକ, ପଇସା ଯୋଗାଡ଼ କରିବି କୁଆଡ଼ୁ ? ଡାକ୍ତରଖାନାରୁ ମାଗଣାରେ ଔଷଧ ମିଳେ । ଡାକ୍ତର ମାଗଣା ଦେଖନ୍ତି । ଭାବିଲି ପଇସା ନଥାଉ, ଚାଲି ଚାଲି ଯିବି ।

—ତେବେ ତମେ କଣ କହୁଛ ସେ…ଦେଖ…କାହାକୁ ମାରି । ରାସ୍ତାରେ ଏତେ ଲୋକ ଯିବା ଆସିବା କରୁଛନ୍ତି, ଜଣେ ତମକୁ ସାହାଯ୍ୟ କରିପାରେ । ଆମେ ତାଙ୍କୁ ଆମର ହିଅତ୍ତ ବହୁତ କାମ ପଡ଼ିଛି । ସଙ୍ଗେ ସଙ୍ଗେ ସେମାନେ ଚାଲିବାକୁ ଆରମ୍ଭ କରି-ଦେଲେ । ନରଞ୍ଜନ ବାବୁଙ୍କ ଉଦ୍ଦେଶ୍ୟରେ କହିଲେ—ଆପଣ ଯଦି ଆମକୁ ସାଙ୍ଗ, ଆମର ଆଗରୁ ଯିବା ଦରକାର, ମିଟିଂ ଆରମ୍ଭ ହେବ । ପୁଣି କୈଫିୟତ ଦେବାକୁ ହେବ । ଆପଣଙ୍କ ସତ୍ୟ ନୁହନ୍ତି । ଆପଣଙ୍କର ଡେରି ହେଲେ ଦୋଷ ନାହିଁ । ଆସନ୍ତା ମାସରେ ମାଗଣା ରୋଗୀ ଚିକିତ୍ସା ଏବଂ ଔଷଧ ବଣ୍ଟନ କାର୍ଯ୍ୟକ୍ରମ ରହିଛି; ସେଇ ବିଷୟରେ ଆଲୋଚନା ହେବ ।

ନରଞ୍ଜନ ବାବୁଙ୍କର ଜୋର୍‌ରେ ହସିବାକୁ ଇଚ୍ଛା ହେଲା । ହେଃ, ରୋଗୀ ଚିକିତ୍ସା ଶିବିର ! ଏଠାରେ ରୋଗୀଟିଏ ଯେ ମରବାକୁ ବସିଲଣି ! ଆରମ୍ଭ ପର୍ଯ୍ୟନ୍ତ କେଉଁ ସ୍ୱସ୍ଥ ରୋଗୀମାନେ ବସିଥିବେ ? ମାଗଣା ଚିକିତ୍ସା ଶିବିରକୁ ଯିବେ ? ଏଇ ବୁଢ଼ୀଟାକୁ ମଧ୍ୟ ଆଗରୁ ପଇସା ଖର୍ଚ୍ଚ କରି ମାଗଣା ଚିକିତ୍ସା ନାମରେ ବଞ୍ଚାଇ ରଖିବାକୁ ପଡ଼ିବ । ରୋଗୀ-ମାନଙ୍କର ଭାଗ୍ୟବଳରୁ ସାମୟିକ ସେବକମାନଙ୍କ ହାତରେ ସ୍ୱର୍ଣ୍ଣ ବାଜିବ ଏମାନଙ୍କ ଦେହରେ । ଅମୃତଚନ୍ଦ୍ରାଙ୍କ ହସ୍ତରୁ ପାଣି ପାଇ ଉଦ୍ଧାର ପାଇଯିବେ ! ଅହୋ…କେତେ କଷ୍ଟ ନକରି ଏମାନେ କେଉଁ ଦୂର ଦୂରାନ୍ତରୁ ଆସୁ ନାହାନ୍ତି—ଯାହା ନିମିତ୍ତ ପ୍ରଚାର ବଢ଼ାଇବା ପାଇଁ, ସେବକ ବାବୁମାନଙ୍କ ନାଁକୁ ଉଚ୍ଚ କରିବା ପାଇଁ । ଯେଉଁ ସେବକମାନେ ହୋଟେଲକୁ ନିତ୍ୟ ହାରରେ ପଶିଯାଉଥିଲେ ଗୃହ ପଇସାରେ ଜଳଖିଆ ଖାଇବାପାଇଁ, ସେମାନେ ତ କାହିଁ ସେହି ପଇସାରୁ ଆଣି, ଦେଉନେ ରକ୍ତସାଉଡ଼ା ନାମରେ ! ଯେଉଁମାନଙ୍କ ନାଁକୁ ନେଇ ଏମାନେ ପଇସା କମାଉଛନ୍ତି ସେସବୁ ଯାଉଛି କାହା ଖର୍ଚ୍ଚରେ ? ସେବା କାର୍ଯ୍ୟରେ ନା ସେବକ କାର୍ଯ୍ୟରେ ? ଏମାନେ ସେବକ ବାବୁ ସତ, କିନ୍ତୁ ଶିଳ୍ପୀ-ହାତଗଢ଼ା ମୂର୍ତ୍ତିଟିଏ ଭଳି—ଆଖି, କାନ, ହାତ ଗୋଡ଼ ଥିବା ନିଖୁଣ ମଣିଷ ମୂର୍ତ୍ତିଟିଏ । ସେବକ ମୂର୍ତ୍ତିର ସବୁଅଛି, ନାହିଁ ହୃଦୟ । ଶିଳ୍ପୀ ହୃଦୟଟିକୁ ଆଗ ତିଆରି କରି ତା ଉପରେ ମୂର୍ତ୍ତି ଗଢ଼ି ନାହିଁ । ସେଇଟା ଭିତରେ ଅଛି ବୋଲି ମାନସ-ଚକ୍ଷୁରେ ଦେଖି ନେବାକୁ ହୁଏ ।

ନରଞ୍ଜନ ବାବୁଙ୍କ ମନ ଭଙ୍ଗା ଆଇନାର କାଚ ପରି ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ହୋଇ ଯାଇଥିଲା । ରାମନାରାୟଣ ବାବୁଙ୍କ ପାଖକୁ ଯିବା ପାଇଁ ଆଉ ଆଗ୍ରହ ଅଛିଲା ନାହିଁ ମନରେ । ଗୋଟିଏ ରିକ୍ସା ଡାକି ବୁଢ଼ୀକୁ ଧରା ଧରି କରି ତା' ଉପରେ ବସାଇ ଦେଇ ବୁଢ଼ାକୁ କହିଲେ, ବସ ବୁଢ଼ୀ ପାଖରେ । ତାକୁ ଡାକ୍ତରଖାନାକୁ ନେଇଯାଅ, ରିକ୍ସାବାଲାକୁ ମୁଁ ପଇସା ଦେଇ ଦେଉଛି । ଡାକ୍ତର ବାବୁଙ୍କୁ ମୋ ନାଁ କହିବ । ସେ ଭଲ କରି ଦେଖିବେ, ମୋର ଚିହ୍ନା ଲୋକ ସିଏ । ଜାଣିଚୁଟି ମୋ ନାଁ ? ନରଞ୍ଜନ ପଟ୍ଟନାୟକ ।ସେବକ ବାବୁ ନୁହେଁ ।

# ସ୍ୱାଧୀନ ମଣିଷ

ମ୍ଳାନ ଅପରାହ୍ଣର କ୍ଳାନ୍ତ ଶ୍ରାନ୍ତ ମୁହୂର୍ତ୍ତିପରି ଲୋକନାଥ ବାବୁଙ୍କର କ୍ରମଃ ବାର୍ଦ୍ଧକ୍ୟର କ୍ଷଣଗୁଡ଼ିକ ହାହାକାରମୟ ହୋଇ ଉଠୁଥିଲା । ଦୁଇ ଚକ୍ଷୁ-ତାରକାର ଜ୍ୟୋତି ଧୀରେ ଧୀରେ ନିଷ୍ପ୍ରଭ ହୋଇ ଆସୁଥିଲା । ସେ କ'ଣ ସବୁ ଭାବୁଥିଲେ, କିନ୍ତୁ ହୋଇଗଲା କ'ଣ ? ମଞ୍ଜି ବୁଣିଦେଇ ଗଲେ କିଏ, ଫସଲ କାଟି ଘରକୁ ନେଲେ କିଏ ? ନିନ୍ଦା ପାଇବାର ଲୋକେ ପ୍ରଶଂସିତ ହେଲେ, ପ୍ରଶଂସା ପାଇବାର ଯୋଗ୍ୟ ବ୍ୟକ୍ତିମାନେ ନିନ୍ଦା, ଅପମାନ, ମିଥ୍ୟା ବଦନାମର କାଦୁଅ ଭିତରକୁ ଠେଲିହୋଇଗଲେ । କେମିତି ଏସବୁ ହେଉଛି ! ଯାହା ନହେବାର କଥା ତାହା ହୋଇଯାଉଛି । ଯାହା ହେବାର ଅଛି ତାହା ହେଉନାହିଁ । ସେ ଉପର ଆଖିରେ ଦୁନିଆ ଦେଖିଛନ୍ତି । ଏତେ ଭିତରକୁ ପଶି ନାହାନ୍ତି । ମଣିଷ ଚରିତ୍ରର ଦୁଇଟା ଅର୍ଥ କାଢ଼ି ପଢ଼ି ନାହାନ୍ତି । ଅନ୍ୟ ଶବ୍ଦ ପରି ମଣିଷ ଶବ୍ଦର ମଧ୍ୟ ପାଞ୍ଚଟା ଅର୍ଥ ଅଛି ଏ ବିଷୟରେ ମଧ୍ୟ ସେ ଧାରଣା କରିନାହାନ୍ତି । ସତ୍ୟର ଅର୍ଥ ସତ୍ୟ । ତା'ର ଆଗରେ ଏବଂ ପଛରେ ବିଭିନ୍ନ ପ୍ରକାର ଭେଦ ଏକଥା ସେ କେବେ ବିଶ୍ଳେଷଣ କରି ଦେଖିନାହାନ୍ତି । ସତ ତ ସତ, ଫେର୍ ମିଛରେ ସତ, ସତେରେ ସତ୍ୟ କ'ଣ ?

ଲୋକନାଥବାବୁ ତାଙ୍କ ଜୀବନରେ ଯେତେଗୁଡ଼ିଏ ଲୋକଙ୍କ ସହ ମିଶୁଥିଲେ ସେମାନେ ସମସ୍ତେ ଯେ ଗୋଟିଏ ଲେଖାଏଁ ମଣିଷ, ସେ ଖାଲି ଏତିକି ବୁଝିଥିଲେ । ମଣିଷ ଶବ୍ଦର ଅନ୍ତରାଳରେ ଆହୁରି ଅନେକ ଶବ୍ଦ ଯେ ପ୍ରୟୋଗ ହୋଇପାରେ ଏକଥା ତାଙ୍କ ଧାରଣା ବାହାରେ ଥିଲା । ତାଙ୍କ ଭଳି ତାଙ୍କର ବନ୍ଧୁମାନେ ମଧ୍ୟ ଏ ବିଷୟରେ ଅଜ୍ଞ ଥିଲେ । ସମସ୍ତେ ଥିଲେ ଏକାପରି । ଏକ ଚିରନ୍ତନ ଗୁଣାବଳୀରେ ଭାସ୍ୱର ହୋଇ ଉଠୁଥିଲା ସମସ୍ତଙ୍କର ଜୀବନ । ଜୀବନ କ'ଣ ? ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଯିବାପାଇଁ ଗୋଟିଏ ପୋଲ, ଗୋଟିଏ ରାସ୍ତା । ସେ ରାସ୍ତାରେ ମାଇଲ ଖୁଣ୍ଟ କେତେ ମାଇ ! ପଚିଶ କି ଷାଠିଏ···କି ଆଉ କିଛି ଅଧିକ । ଏତିକି କମ୍ ରାସ୍ତା ପାରହେବା ପାଇଁ ଏତେ କାହିଁକି ପାଥେୟ ଲୋଡ଼େ ମଣିଷ ? ଲଙ୍ଗଳା ହୋଇ ଜନ୍ମ ହୋଇଥିଲେ ମଧ୍ୟ ଗୋଟେଇ ସାଉଁଟି କେତେ ଜିନିଷ ଏକାଠି କରିଥାଏ ! ଏତେ ପରିଶ୍ରମ କରି ସବୁ ଗଣ୍ଠିଲି ବାନ୍ଧୁ କଷ୍ଟରେ ବୋହି ବୋହି ଶେଷରେ ରାସ୍ତା ଶେଷ ଖୁଣ୍ଟିଟା ପାଖରେ ଗଣ୍ଠିଲିଟା ଛାଡ଼ିଦେଇ ପଳାଏ । ସେଇଟାକୁ ନେବେ ତା'ର ପିଲା କୁଟୁମ୍ବ । ନିଜର ପିଲାଙ୍କ···ତାଙ୍କ ପାଇଁ ଭଲ ଜିନିଷ ନରଖି ଗୁଡ଼ିଏ ପାପ ଏବଂ ଅନାଦନା ଚିଜ ରଖିବ କାହିଁକି ? ନିଜ ପିଲାତ ଫେର୍ ତାକୁ ଭୋଗିବେ । ସେହି ଭୟରେ ଲୋକନାଥ ବାବୁ ଜୀବନର ଗଣ୍ଠିଲିରେ ମିଛ ପାପ ଭରିନାହାନ୍ତି । ସବୁ ପୁଣ୍ୟ ସଞ୍ଚୟ କରି ଏ ପର୍ଯ୍ୟନ୍ତ ଚାଲି ଆସୁଛନ୍ତି । କେତେ ହାଲୁକା

ଲାଗିଛି ତାଙ୍କ ଖପ । କିନ୍ତୁ ଲୋକଗୁଡ଼ାକ କି ଅନ୍ଧ ! ତାଙ୍କ କୌଣ୍ଡିଲ୍ୟଙ୍କୁ କହୁଚନ୍ତି ବୁଦ୍ଧୁର ବୋକାଗୁ । ଗୁଡ଼ାଏ •ବେକାର ଜିନିଷ ପୂରାଇଛି ଲୋକଟା । ପେଟରେ ଭୋକ, ମୁହଁରେ ହରିନାମ—କ'ଣ ମିଳିବ ଏଥିରୁ···ଶଳା···ଗୁ'କପେ ମିଳିବ ନାହିଁ । ଯୁଧିଷ୍ଠିର ବାବୁ, ତାଙ୍କ ବନ୍ଧୁ, କହନ୍ତି, ଅରେ ? ମଣିଷ ଜୀବନ ଦୁର୍ଲଭ, ଖା, ପି, ମଉଜ କର । କାହିଁକି ମିଛରେ ଜୀବନକୁ ମାଟି କରିଦେଉଛ ? ଲୋକନାଥବାବୁ ଅସନ୍ତୋଷରେ ହସନ୍ତି, କହନ୍ତି— ଜୀବନକୁ ମାଟି ନକଲେ, ବୀଜ ବୁଣିବ କେଉଁଠି, ଆକାଶରେ ? ଫଳିବ କ'ଣ ପବନ ? ଗାନ୍ଧୀ ମହାତ୍ମା ପରି କେତେଜଣ ନିଜ ଜୀବନକୁ ମାଟି କରିଦେଇଥିଲେ ବୋଲି ସ୍ୱାଧୀନତାର ଫଳ ତୋଳି ଖାଉଛ ଆଜି, ବୁଝିଲ ?

ଆମେତ ସବୁ ଫଳ ଖାଉଛୁ । ଗାନ୍ଧୀ ମହାତ୍ମା ଖାଇଲେ କ'ଣ ଗୁଳି ? ଯାଅ··· ଯାଅ···ଦେଖିବ । ଆମ ଗ୍ରାମ ସରପଞ୍ଚ ବାବୁଙ୍କୁ । କେମିତି ମନ୍ତ୍ରରେ ଜୀବନ ନଉକା ବାହୁଚନ୍ତି । ସୁଖ ସମ୍ଭୋଗର ଉଚ୍ଛୁଳା ନଈରେ ନଉକା ସର୍ ସର୍ ହୋଇ ଚାଲିଛି । ଆଉ ତମର ଝଙ୍କାର ନଈ, ପାଣି ନାହିଁ, କାତ ଯାଇ ତଳେ ବାଜୁଛି । ଡଙ୍ଗା ଚାଲିବ କେମିତି ? ଉପହାସ କରନ୍ତି ଯୁଧିଷ୍ଠିର ବାବୁ । ଲୋକନାଥ ବାବୁଙ୍କ ଆଖି ଆଗରେ ଆଙ୍ଗୁଠି ହଲାଇ··· ଓଠ ନେଫେଡେଇ ।

ଅରେ, ନଉକା ଖିର ବେଗରେ ନ ଚାଲିଲେ ମଧ୍ୟ ବୁଡ଼ିଯିବାର ଭୟ ନାହିଁ । ଉଚ୍ଛୁଳା ନଈର ସୁଅରେ ଡଙ୍ଗା କେତେବେଳେ ବୁଡ଼ିଯିବ ତା କିଏ କହିବ ? ଲୋକନାଥ ବାବୁ ଯୁଧିଷ୍ଠିର ବାବୁଙ୍କ କଥାକୁ ଗୁରୁତ୍ୱହୀନ ମନେକରନ୍ତି । ଯୁଧିଷ୍ଠିର ବାବୁ ଚୁପ୍ ହୋଇ-ଯାଆନ୍ତି । ଲୋକନାଥ ସତରେ ପ୍ରତିଭାଶାଳୀ । ମିଛଦିନୁ କେବେ ତାକୁ ଯୁକ୍ତିରେ ହଟାଇ ପାରିନାହାନ୍ତି ସେ, ନିଜେ ଯିନା ଯୁକ୍ତି କରନ୍ତି, ଅନ୍ୟମାନଙ୍କର ଐଶ୍ୱର୍ଯ୍ୟ ଦେଖି କିନ୍ତୁ ଲୋକନାଥଙ୍କପରି ଚରିତ୍ରକୁ କେବେ ସେ କଳଙ୍କିତ କରିନାହାନ୍ତି । ଦୁଇବନ୍ଧୁ ଏ କୋଭଳି ।

ଯୁଧିଷ୍ଠିରଙ୍କର ମନେପଡ଼େ, ଦୁର୍ବିନୀତ ହେଲେ ମଧ୍ୟ ସ୍ୱାଧୀନତା ସଂଗ୍ରାମର ସେହି ରୋମାଞ୍ଚକର ଦିନଗୁଡ଼ିକ । ସେମାନଙ୍କ ସହିତ ଆହୁରି ଅନେକ ଥିଲେ । ଦୋଷକରି ଦଣ୍ଡ ପାଇବାଠାରୁ ନିର୍ଦ୍ଦୋଷରେ ଦଣ୍ଡିତ ହେବାର ଆନନ୍ଦ କି ଗୌରବମୟ ! ଶରୀରକୁ ଅଧିକ ଶକ୍ତି, ମନକୁ ଅଧିକ ଦୃଢ଼ କରିବା ନିମନ୍ତେ ମିଳିତ ପ୍ରତିଜ୍ଞା । ଚୋର, ଡକାଏତ ନହୋଇ ମଧ୍ୟ ସେମାନେ ଜେଲରେ ପଶିଛନ୍ତି । ବାହାରେ ରହିଲେ ଲୋକଙ୍କୁ ମତାଇଦେବେ ଯେ ଆମ ଜିନିଷକୁ ଅନ୍ୟମାନେ ମାରି ନେଉଛନ୍ତି । ମାଗିଲେ ଯଦି ନଦେଉଛନ୍ତି ସେଠି ଛଡ଼େଇ ଆଣିବାରେ ପାପ ନାହିଁ । ଏମାନଙ୍କୁ ପଦାକୁ ଛାଡ଼ିଦେଲେ ଚୋରି ଧରାପଡ଼ିଯିବ । ସେମାନେ ବିଦେଶୀ, ସୁନାର ଭାରତର ବୈଭବ ପ୍ରତି ଲୋଭାତୁର ହୋଇ ଉଠିଥିଲେ । ଲୋକଙ୍କୁ ଲୁଟ୍ କରୁଥିଲେ । ଏବେତ ଦେଶ ସ୍ୱାଧୀନ । ତେବେବି···ନିଜ ଲୋକକୁ ଲୁଟ୍ କରିବାକୁ କିପରି ତତ୍ପର ହୋଇଉଠୁଛନ୍ତି ଲୋକେ ! ଦୁଃଖରେ ହାହାକାର କରି ଉଠେ

ଯୁଧିଷ୍ଠିରଙ୍କ ମନ । ସେତେବେଳେ ବିଦେଶୀଙ୍କ ପ୍ରତି ବିଶ୍ୱାସ ଆସୁ ନ ଥିଲା । ଏବେ ନିଜ ଲୋକ ପ୍ରତି ବିଶ୍ୱାସ ତୁଟି ଯାଉଛି । କାହାକୁ ଦୋଷ ଦେବ ? ମଣିଷ ପ୍ରକୃତ ହବୁବେଳେ ମଣିଷ ଭଳି । ସେ ବିଦେଶୀ ହେଉ କି ସ୍ୱଦେଶୀ ହେଉ । ଲୋକନାଥ ବାବୁଙ୍କର ମଧ୍ୟ ସେଇ ଏକା ଦୁଃଖ । ଏ ଗାଁ ଲୋକଗୁଡ଼ାକ କିଛି ବୁଝୁ ନାହାନ୍ତି । ଅନ୍ଧଭଳି ଉଣ୍ଡାଳି ଉଣ୍ଡାଳି ଅବାଟରେ ପଶୁଛନ୍ତି । ଲୋକଙ୍କୁ ସେ ଏତେ ବୁଝାଉଛନ୍ତି, ଘଣ୍ଟା ଘଣ୍ଟା ଧରି ରାସ୍ତାରେ ଛିଡ଼ା ହୋଇ ନିଜର ସମୟ ନଷ୍ଟ କରୁଛନ୍ତି, ପରେବା ଆଣିବାକୁ ଯାଇ ଚିପି ଚିପି ଖାଲି ବ୍ୟାଗ୍ ଧରି ଘରକୁ ଫେରିବାରୁ ସ୍ତ୍ରୀଙ୍କଠାରୁ ଗାଳି ଖାଉଛନ୍ତି, ତଥାପି ଏମାନେ ଅବୁଝା । ଏଇଥି-ପାଇଁ ସରପଞ୍ଚଙ୍କର ତାଙ୍କ ଉପରେ ଖୁବ୍ ରାଗ । ଗୁଣ୍ଡା ଲଗାଇ କେତେଥର ମାରି ପକେଇବାର ଧମକ ଦେଲେଣି । କିନ୍ତୁ ସ୍ୱଭାବ ବଦଳାଉ ନାହାନ୍ତି ଲୋକନାଥ । ଗାଁ ଲୋକଗୁଡ଼ା ହଇରାଣ ହେଉଛନ୍ତି । ଟ୍ରାକ୍ଟର ଆସିବା ପାଇଁ ଟଙ୍କା ଆସିଲା, ଟ୍ରାକ୍ଟର ଆସିଲା ନାହିଁ । ମାଛ ଯାଆଁଳ ଛଡା ଯିବା ପାଇଁ ଟଙ୍କା ମଞ୍ଜୁର ହେଲା, ମାଛ ଯାଆଁଳ ଆସିଲା ନାହିଁ । ସ୍କୁଲ୍ କାନ୍ଥ ଟେକା ହେବା ପାଇଁ ଟଙ୍କା ଆଦାୟ ହେଲା, ଅଥଚ ଆଉ ଦି'ଟା ଇଟା କାନ୍ଥ ଲିଭୁଡ଼ିବା ଉପରେ । ଗାଁର ମୁଖିଆମାନେ ସବୁ ଯାଉଛନ୍ତି ସରପଞ୍ଚଙ୍କ ନିକଟକୁ ଏସବୁ ବିଷୟରେ ଆଲୋଚନା କରିବା ପାଇଁ ।

ଗାଁପକର ନାନା ପ୍ରକାରର ଖବର କାଗଜ ପଢ଼ି, ଟି' ପାନକରି ଫେରିଆସୁଛନ୍ତି ହସ ହସ ମୁହଁରେ । ହେବ, ହେବ, ସବୁ ହେବ । ଏ ପ୍ରଶ୍ନର ଆଉ କିଛି ଉତ୍ତର ନାହିଁ, ଖାଲି ହେବ, ହେବ, ହେବ । ସେମାନଙ୍କ ମୁହଁ ମଧ୍ୟ ହସ ହସ—ଆଖିରେ ଆଶାର ଆଲୋକ । ବ୍ୟସ୍ତତା ନାହିଁ ବିବ୍ରତଭାବ ନାହିଁ । ଏଟିକିଆ ସରଳ ମଣିଷଗୁଡ଼ାଏ । ଯାହା କହିଦେଲେ ବିଶ୍ୱାସ କରିଯାଉଛନ୍ତି । କଷ୍ଟରେ ଚଳିବା ଅଭ୍ୟାସରେ ପରିଣତ ହୋଇ-ଗଲେଣି । ଅସୁବିଧାରେ ଦିନକାଟିବା ଜନ୍ମରୁ ଶିଖି ଆସିଛନ୍ତି । ତାଙ୍କର ହେବା ନହେବା ଭିତରେ କିଛି ତଫାତ୍ ନାହିଁ । ସେମାନଙ୍କ ପାଇଁ ଲୋକନାଥଙ୍କର କାହିଁକି ମୁଣ୍ଡ ବିନ୍ଧୁଛି ! ତାଙ୍କର କ'ଣ ଲାଗିଯାଉଛି !! ସେମାନଙ୍କର ସୁବିଧା ହେଲେ କେତେ ନହେଲେ କେତେ··· ମା' ମନପରି ତାଙ୍କ ମନ କେତେ ଅବୁଝା । ପିଲାଟି ନ ଖାଇଲେ ତା' ନିଜର ଚିନ୍ତା ନଥାଏ । ମା' ପେଟତ ଭୋକରେ ହାଉ ହାଉ ହୁଏନାହିଁ । ମୋ ପୁଅ ଖାଇନି ବୋଲି ମା' କାହିଁକି ବ୍ୟସ୍ତ ହୋଇପଡେ ? ପିଲା ଫେଲ୍ ହେଲେ ତା'ର ଭାବନା ନଥାଏ । ମା' କାହିଁକି ସବୁ ଦେବତାଙ୍କୁ ଡାକୁଥାଏ ମୋ ପୁଅକୁ ବିଦ୍ୟା ବୁଦ୍ଧିରେ ଭୂଷିତ କରିଦିଅ ପ୍ରଭୁ ? କି ନିଗୂଢ଼ ରହସ୍ୟ ଅଛି ଏଇ ସମ୍ପର୍କର ମଝି ଫାଙ୍କରେ !! ସେଇପରି ଲୋକନାଥଙ୍କ ମନ ଅକାରଣରେ ଗାଁ ଲୋକଙ୍କ ପାଇଁ ବିଷାଦଗ୍ରସ୍ତ ହୋଇଉଠେ । ତାଙ୍କ ଭଲ ମନ୍ଦର କାହାଣୀ ଶୁଣିବା ପାଇଁ ଉଦ୍‌ଗ୍ରୀବ ହୋଇ ଉଠେ ଦୁଇ କାନ । ସେମାନଙ୍କର ଅଭାବ ଅସୁବିଧା ହଟାଇବା ପାଇଁ ଅଣ୍ଟା ଭିଡ଼ି ସେ ବାହାରି ପଡ଼ନ୍ତି । ଏଠି ସେଠି ଲେଖି ଧରଣରେ ବିଷୟ ଦେଇପକାନ୍ତି । କିନ୍ତୁ କିଛି କରିପାରନ୍ତି ନାହିଁ ।

ଯେଉଁ ଲୋକ ଗୁଡ଼ାକ ତାଙ୍କ କଥାରେ ମୁଣ୍ଡ ହଲାଇ ହଁ। ହଁ। ମାରି ସମର୍ଥନ ଜଣାନ୍ତି ତା'ପରଦିନ ପୁଣି ଯାଇ ଗୋଳେଇ ହୁଅନ୍ତି ସରପଞ୍ଚଙ୍କ ଆଗରେ । ଗାଁର କେଇଟା ଛତରା ଲାଙ୍ଗିପିନ୍ଧା ଅଧା ପାଠୁଆ ଟୋକା ନିଜକୁ ନିଜେ ଭାବନ୍ତି ମହାନ୍ ବ୍ୟକ୍ତି ବୋଲି । ତାଙ୍କୁ ଅଖିମିଞ୍ଚିକା ମାରି ଚେତେଇ ଦିଅନ୍ତି ହେ ବୁଢ଼ା । ନିଜ କଥା ନଭାବି ପର କଥାରେ ଏତେ ମୁଣ୍ଡପୂରାଇ ନଟର ଖଟର ହେଉଛୁ କାହିଁକି । ପିଠି କୁଣ୍ଡାଇ ହେଉଛି କି ? ଲୋକନାଥବାବୁ ଆଶ୍ଚର୍ଯ୍ୟ ହୁଅନ୍ତି ଏମାନଙ୍କର କହିବା ଢଙ୍ଗ ଏବଂ ଭାଷାର ପ୍ରୟୋଗ ପ୍ରଣାଳୀ ଲକ୍ଷ୍ୟକରି । ଏମାନେ ସରପଞ୍ଚଙ୍କର ଗୁପ୍ତଚର । ଗାଁଟାଯାକ ବୁଲି ବୁଲି କେଉଁଠି କ'ଣ ହେଉଛି, ତାଙ୍କ ବିଷୟରେ ଲୋକେ କ'ଣ କହୁଛନ୍ତି, କେଉଁ ଯାଗାରେ କ'ଣ କହି ଚେତେଇ ଦେବାକୁ ହେବ, ଏଇସବୁ କାର୍ଯ୍ୟର ରିପୋର୍ଟ ପେଶ୍ କରିବା ଏମାନଙ୍କର କାମ । ସେଥିପାଇଁ ପକେଟ୍ ଗରମ କରିଦିଅନ୍ତି ସରପଞ୍ଚ । ପାନ, ବିଡ଼ି, ସିଗାରେଟ୍ ଏବଂ ଗାଁ ମୁଣ୍ଡର ନଟସାହୁ ଦୋକାନରେ ଦିଣଥର ଚା' ପିଇ ଆଡ୍ଡା ଦେବାଲାଗି ତାଙ୍କୁ ଗୋଟାଏ ସାପ୍ତାହିକ ବା ମାସିକ ଭତ୍ତା ମିଳିଯାଏ ।

ଏଗୁଡ଼ା ଶୁଣି ସ୍ତ୍ରୀ ତାଙ୍କୁ ଗାଳିଦିଅନ୍ତି । କାହିଁକି ସେ ଛତରଖିଆଙ୍କଠୁ ଏ ଅଭଦ୍ର ଭାଷା ଶୁଣୁଛ ? ଦୁନିଆଟା କେବେ ବଦଳିଲାଣି ନା ତମେ ଦୁନିଆକୁ ବଦଳେଇ ଦେବ ?

ଲୋକନାଥବାବୁ ହସି ହସି କହନ୍ତି—ଦେଖିବ, ଦେଖିବ, ଦୁନିଆ ବଦଳିବ, ନିଶ୍ଚୟ ବଦଳିବ । ତା'ର ରଙ୍ଗ ବଦଳେଇବା ପାଇଁ କେତେଗୁଡ଼ିଏ ଚିତ୍ରକର ଦରକାର । ନହେଲେ ମନକୁ କେମିତି ତା'ର ରୂପ ବଦଳିବ ?

ନରି ପ୍ରଧାନ ଖବର ଦେଇଗଲା, ସାର୍, ଟିକିଏ ସାବଧାନ ଥିବେ । କ୍ଲବ ଘର ପାଖରେ ଶୁଣି ଆଇଲି ଦଳେ ଟୋକା ଆପଣଙ୍କ ପାଖକୁ ଆସିବେ । କ'ଣ ଡେରେଙ୍ଗେରି କରିପାରନ୍ତି । ଆପଣ ମୋଟେ ପାଟି ଫିଟାଇବେ ନାହିଁ । ସତର୍କ କରେଇଦେବା ସଙ୍ଗେ ସଙ୍ଗେ ଉପଦେଶ ମଧ୍ୟ ଦେଇଗଲା ନରି ।

ଲୋକନାଥ ବାବୁ ମନେମନେ ହସିଲେ, ସାମାନ୍ୟ କଥା ଟିକକୁ ବୁଲେଇବଙ୍କେଇ ଗୁରୁତ୍ୱପୂର୍ଣ୍ଣ କରି ଥୋଇବା ନରିର ବୃଥା ବାହାଦୁରି । କ୍ଲବ ପିଲାମାନେ ତାଙ୍କୁ ଶ୍ରଦ୍ଧା କରନ୍ତି, ସମ୍ମାନ ଦେଖାନ୍ତି । ଲୋକନାଥଙ୍କର ଗାଁ ମୁଣ୍ଡ ଅମ୍ବ ବଗିଚା ନିକଟରେ ଗ୍ରେଟିଆ ଡ଼ିଅ ଉପରେ କ୍ଲବ ଘର ତୋଳିଛନ୍ତି ମାସେ ହେବ । ଚନ୍ଦା କରି ଅଳ୍ପ ବହୁତେ ଆସବାବପତ୍ର କିଣିଛନ୍ତି ।

ଗାଁ ସ୍କୁଲରୁ ଅବସର ନେବା ପରେ ଲୋକନାଥଙ୍କର ଆଉ କିଛି କାମ ନାହିଁ । ଗାଁର ଏମୁଣ୍ଡରୁ ସେମୁଣ୍ଡ ଯାଏ ଦୁଇ ଚାରିଥର ବୁଲି ଆସନ୍ତି ଯା' ତା'ର ଭଲମନ୍ଦ ପଚାରି ପଚାରି । ସମୟ ଯେପରି କଟେ ନାହିଁ । ଆଜି ପିଲାମାନେ ଅସୁଚନ୍ତି କିଛି ଆଲୋଚନା

କରିବା ନିମନ୍ତେ । ଯାହାହେଉ କିଛି ସମୟ ଅନ୍ତତଃ ଖୁବ୍ ଭଲରେ ବିତିଯିବ । ଏଇ କେତୋଟି ପିଲାଙ୍କୁ ଅନ୍ତତଃ ସେ ଯଦି ଉଚ୍ଚଶିକ୍ଷା ଦେଇପାରନ୍ତେ…ଗାଁର ଭଲମନ୍ଦ ବିଷୟରେ ଏମାନେ ଅବଗତ ହୋଇ କିଛି ଉନ୍ନତି ଯଦି କରିପାରନ୍ତେ… । ଆଜିକାଲି ଲୋକେ ଯେତେ ଶିକ୍ଷିତ ହେଉଛନ୍ତି ତାଙ୍କ ଚରିତ୍ର ଉର୍ଦ୍ଧ୍ୱକୁ ହେବା ପରିବର୍ତ୍ତେ ନିମ୍ନକୁ ହେଉଛି । ଶିକ୍ଷାର ଉଦ୍ଦେଶ୍ୟ କ'ଣ ନୀତିସ୍ଖଳନ, ପଥଭ୍ରଷ୍ଟ ହୋଇ ନିମ୍ନକୁ ଗତି କରିବା ! ଅନ୍ତତଃ ଏଇ କେତୋଟି ପିଲା ଯଦି ବୁଝନ୍ତେ ତାଙ୍କର ମନକଥା ! ବୁଝନ୍ତେ ଯଦି ସେଇ ସରପଞ୍ଚଙ୍କର କାରସାଦି ! ହୁଣ୍ଡାଏ ଅମୃତରେ ଯେ ବିଷଭଳି ମିଶି ରହିଛି ଏଇ ଗାଁଟାରେ । ସମସ୍ତଙ୍କର ପଇସାରେ ତାଙ୍କର ଘର ତୋଳା ହେବ, ପୋଖରୀ ଖୋଳାହେବ, ଝିଅ ବାହାଘର ହେବ । ଗାଁ ପରିମଳ ଧୋବା ତୁଠରୁ, ସତେକି ତାଙ୍କୁ ଦେଖିଲେ ଗାଁ ଲୋକେ ଖୁବ୍ ଅନ୍ୟସରେ ଅନ୍ତରଙ୍ଗ ବୋଲି ଯେ କେହି ମନେକରିବ । ଗାଁର ସେ ପ୍ରତିନିଧି । ଗାଁର ଅବସ୍ଥା ତାଙ୍କୁଇ ଦେଖିଲେ ବୁଝାଯିବ ।

—ନମସ୍କାର, ସାର୍ । ସେଇତ ପିଲାମାନେ ଆସିଗଲେ । ଲୋକନାଥ ବାବୁ ଯେପରି ସମ୍ବିତ୍ ଫେରି ପାଇଲେ । ପିଲାମାନେ ବାରଣ୍ଡା ଉପରକୁ ଉଠିଲେ ।

ଲୋକନାଥବାବୁ ଉତ୍ସାହିତ ହୋଇ କହିଲେ, ଆସ…ଆସ…ମୁଁ ତ ତୁମମାନଙ୍କୁ ଅପେକ୍ଷା କରିଛି ।

ପିଲାମାନେ କହିଲେ, ସାର୍ ! ଆମ କ୍ଲବ ଘରେ ଏଯାଏଁ କୌଣସି ଉତ୍ସବ ପାଳିତ ହୋଇନାହିଁ । ପ୍ରଥମେ ହେବ ଅଗଷ୍ଟ ପନ୍ଦର । ଆମର ସ୍ୱାଧୀନତା ଦିବସ । ପ୍ରଭାତରେ ପତାକା ଉତ୍ତୋଳନ, ମଧ୍ୟାହ୍ନରେ ଖେଳ ପ୍ରତିଯୋଗିତା, ଏବଂ ସନ୍ଧ୍ୟାରେ ସଭା, ଶେଷରେ ପୁରସ୍କାର ବିତରଣ ।

ବାଃ ବାଃ । ଭଲକାମ, ଲୋକନାଥବାବୁଙ୍କର ହୃଦ୍‌ବୋଧ ହୋଇଗଲା । ତାଙ୍କ ସମୟରେ ଏମିତି କେତେ ଉତ୍ସବ ସେମାନେ କରୁଥିଲେ । ଏବେ ସେସବୁ ଧୀମା ପଡ଼ିଯାଇଛି । ପରାଧୀନତାର ରକ୍ତ ଯେତେ ଗରମ ଥିଲା, ସ୍ୱାଧୀନ ହେବାପରେ ତାହା ସେମିତି ଥଣ୍ଡା ପଡ଼ିଯାଇଛି । ଲୋକନାଥବାବୁ ନିଜ ଭାବନାରେ ହଜିଗଲେ ଯେପରି ।
—ସାର୍ ! କ'ଣ ଭାବୁଛନ୍ତି ? ସକାଳୁ ଆସି ଆମେ ପହଞ୍ଚିବୁ ଏଠି, ଆପଣ ପ୍ରସ୍ତୁତ ହୋଇଥିବେ । ଆମ କ୍ଲବ ଘରେ ପତାକା ଉତ୍ତୋଳନ କରିବେ । ସଭାରେ ପୁରସ୍କାର ବିତରଣ କରିବେ ।

ଆଚ୍ଛା…ଆଚ୍ଛା ।

ହଉ ସାର୍ । ଆମେ ତେବେ ଆସୁଛୁ ।

ହଉ । ତୁମର ଉତ୍ସବ ସାଫଲ୍ୟମଣ୍ଡିତ ହେଉ ।

ସେଇ ମୁହୂର୍ତ୍ତଠାରୁ ଲୋକନାଥଙ୍କର ସେପରି ସମ୍ପର୍କ ରହୁନାହିଁ ! ପିଲାମାନଙ୍କର ହାଁ ଧଉଡ଼ ଲକ୍ଷ୍ୟକରି ସେ ମଧ୍ୟ ଚଞ୍ଚଳ ହୋଇ ଉଠୁଛନ୍ତି । ରୋମାଞ୍ଚିତ ହୋଇ ଉଠୁଛି ତାଙ୍କ ଦେହ ମନ । କେତେଥର କ୍ଲବ ଘରଆଡ଼େ ବୁଲି ଆସୁଛନ୍ତି । କ୍ଲବଘର କାମ ଅଳ୍ପ ଯେତେ ବାକି ଥିଲା ପିଲାଏ ଲାଗିପଡ଼ି ତାକୁ ସାରୁଛନ୍ତି । ଅଗଷ୍ଟ ପନ୍ଦର ପୂର୍ବଦିନ ସବୁ କାମ ଶେଷ ହୋଇଗଲା । ପ୍ରତ୍ୟୟ ଆସୁଛି ମନରେ ଏଇ ପିଲାଏ ଗାଁର କିଛି କରିବେ । ସହଳ କଥା ବୁଝିବେ । କାଲି ସଭାରେ ତାଙ୍କ ଷ୍ଟେଜକାଟିଆ ଭାଷଣରେ ସବୁକଥା କହିଦେବେ । ବୁଝାଇଦେବେ ଏ ଗାଁର ଉନ୍ନତି କାହିଁକି ହେଉ ନାହିଁ । ସେ ଲୋକଙ୍କୁ କିଛି କହିବାର ସୁଯୋଗ କେତେବେଳେ ପାଉ ନାହାନ୍ତି । ଗାଁରେ ଯେତେ ଉତ୍ସବ ସବୁଥିରେ ପୁରୋଧା ସେଇ ସରପଞ୍ଚ । ଏଇଥର ସୁଯୋଗ ସେ ପାଇଛନ୍ତି । ଗୋଟିଏ ମୂର୍ଖ ଆଗରେ ତାଙ୍କ ବିଦ୍ୟା ବୁଦ୍ଧି ହାର ମାନିଯିବ, ଏହା କି ଅପମାନଜନକ ।

ଆଜିର ରାତି ଯେପରି ତାଙ୍କ ଜୀବନରୁ ସବୁଠାରୁ ଦୀର୍ଘତମ ରାତି ! କି ଏକ ଅଦୃଶ୍ୟ ଉତ୍ସାହରେ ଛଟପଟ ହେଉଛନ୍ତି ଲୋକନାଥ ବାବୁ । କାଲି ଅଗଷ୍ଟ ପନ୍ଦର । ଏକ ପତାକା ଉଡ଼ାଇବା ନିମନ୍ତେ କି କଷ୍ଟ ସହ୍ୟ ନକରିଛନ୍ତି । ଗାନ୍ଧୀ ମହାତ୍ମା ତାଙ୍କର ନେତା ବୋଲି ତାଙ୍କୁ ସମସ୍ତେ ମନେରଖିଛନ୍ତି । ତାଙ୍କ ପଛରେ ଶହ ଶହ ପିମ୍ପୁଡ଼ି ଭଳି ଯେଉଁ ଶ୍ରମିକମାନେ ସ୍ୱାଧୀନତା ଆଣିବାରେ ଶ୍ରମଦାନ କରିଥିଲେ ସେମାନଙ୍କୁ ମନେ ରଖିଛି କିଏ ? ସେହି ଶହ ଶହଙ୍କ ଭିତରେ ଲୋକନାଥ ଜଣେ । ଜେଲ ଯାଇଛନ୍ତି । ଲୁଚି ଲୁଚି ରାତି ରାତି ବିତିଯାଇଛି ଏଠିକା ଖବର ସେଠି ଦେବାରେ । ପୋଲିସର କଡ଼ା ନଜରରେ ପଡ଼ିଯାଇଛନ୍ତି କେତେଥର । ଲାଠି ମାଡ଼ରେ ମୁଣ୍ଡ ଫଟାଇ ରକ୍ତାକ୍ତ ହୋଇଛନ୍ତି । ତଥାପି ଡରି ନାହାନ୍ତି । ଜୀବନ ପଣ ରଖିଛନ୍ତି—ଯେପରି ହେଉ ସ୍ୱାଧୀନତା ଆଣିବାକୁ ହେବ । ସ୍ୱାଧୀନତା ସଂଗ୍ରାମ ଗ୍ରନ୍ଥର ସେ ଏକ ଶ୍ରେଷ୍ଠ ଶବ୍ଦ ବା ଗୋଟିଏ ଅକ୍ଷର । କିଏ ତାଙ୍କୁ ମନେରଖି ପାରିଛି !

ଦେଶ ସ୍ୱାଧୀନ ହୋଇଗଲା ପରେ ସବୁ କେମିତି ଓଲଟିଗଲା । ସେତେଗୁଡ଼ିଏ ଆଦର୍ଶବାନ ପୁରୁଷ ନାଆଁ, ପରାଧୀନ ଭାରତର ଶେଷରାତି ସହିତ ଯେପରି କେଉଁଆଡ଼େ ଅଦୃଶ୍ୟ ହୋଇଗଲେ । ସ୍ୱାଧୀନ ଭାରତର ପ୍ରଥମ ଦିନର ପ୍ରଭାତର ସୂର୍ଯ୍ୟର କିରଣ ପଡ଼ିଲା ଅଉ ପଞ୍ଚାଏ ଦେଶୀ ଲୋକଙ୍କ ଉପରେ । ଏଇ ଯେଉଁମାନଙ୍କୁ ଏବେ ସେ ଦେଖୁଛନ୍ତି । ମାନେ କାର୍ ଚଢ଼ି ବୁଲୁଛନ୍ତି । ସଭାସମିତିରେ ଭାଷଣ ଦେଉଛନ୍ତି । ନଜର କୋଠା, ବାଡ଼ି ଗାଡ଼ି, ବ୍ୟାଙ୍କ ବାଲାନ୍ସ ବଢ଼ାଇବାରେ ଲାଗିଛନ୍ତି । ସ୍ୱାଧୀନତାର ନୂତନ ସୂର୍ଯ୍ୟର ଆଲୋକରେ ଜାଜ୍ଜ୍ୱଲ୍ୟମାନ ହୋଇ ଉଠୁଛନ୍ତି ଏଇ ଲୋକମାନେ ଦେଶ ସେବକର ମୁଖା ପିନ୍ଧି ।

ଅନେକ ରାତି ଭାବନାରେ କାଟିଗଲା । ଅନିଦ୍ରାଜନିତ କ୍ଲାନ୍ତି ଯୋଗୁ ସକାଳେ ପରେ ଶୋଇବାରୁ ନିଦ ଭାଙ୍ଗିଲା ନାହିଁ ଲୋକନାଥଙ୍କର । ତଥାପି ବେଶୀ ବେଳ ହୋଇ ନଥିଲା । ଆଠଟା ବେଳେ ପତାକା ଉତ୍ତୋଳନ କାର୍ଯ୍ୟକ୍ରମ । ସେ ଘଣ୍ଟାକ ମଧ୍ୟରେ ନିଜକୁ ପ୍ରସ୍ତୁତ କରିଦେବେ ।

କିନ୍ତୁ ତାଙ୍କର ସମ୍ପୂର୍ଣ୍ଣ ପ୍ରସ୍ତୁତି ପର୍ବ ସରିବାପରେ ମଧ୍ୟ ପିଲାମାନେ ଆସିଲେ ନାହିଁ । ନଅଟା ବାଜିଲା, ଲୋକନାଥବାବୁ ବ୍ୟସ୍ତ ହୋଇପଡ଼ିଲେ । ଅଉ କ'ଣ ପିଲାମାନେ ଉତ୍ସବ ବାତିଲ କରିଦେଲେ !!

ଚୁଲ୍ ଚୁଲ୍ ହୋଇ ଲୋକନାଥବାବୁ ଅନିଚ୍ଛାସତ୍ତ୍ୱେ ମନଦେଇ କ୍ଲବ ଘର ଆଡ଼କୁ ମାଡ଼ିଲେ । ସିଅଡ଼ି ନମ୍ବରପମର ହୋଇ ଧାଇଁଛି ନର ପ୍ରଧାନ । କହିଲା, ମାଷ୍ଟ୍ରେ ! ଯିବେନି କି କ୍ଲବଘର ଆଡ଼େ ? ଯାଆନ୍ତୁ ଯାଆନ୍ତୁ, ଜଲଦି । ଭାଷଣ ସରିଯିବ । ବାବା··· କି ଭାଷଣ, ସାକ୍ଷାତ ଗାନ୍ଧୀ ବୁଢ଼ା !

—ଏଁ ! ଭାଷଣ ! କିଏ ଦେଉଛି ଭାଷଣ ? ଲୋକନାଥବାବୁଙ୍କ ଚାହିଁ ଅଶ୍ଚର୍ଯ୍ୟରେ ଝନ ବାଜିଗଲା ।

କିଏ ଆଉ, ଆମ ସରପଞ୍ଚବାବୁ । ଆମ ଗାଁର ଯାହାର ଯେତେ ଅସୁବିଧା ସବୁ ପୂରଣ କରିଦେବେ ସିଏ । ହେଇପରା ଏଇକଥା ସେ ଭାଷଣରେ କହୁଛନ୍ତି । ଗାଁର ସବୁ ଲୋକ ସେଇଠାରେ ।

ଅବାକ୍ ହୋଇଗଲେ ଲୋକନାଥ । ତାଙ୍କୁ ପିଲାମାନେ ନିମନ୍ତ୍ରଣ କରିଥିଲେ, ଅଥଚ ଭାଷଣ ଦେଉଛନ୍ତି ସରପଞ୍ଚବାବୁ ! ନିଜ ଅଜାଣତରେ ପାଦ ତାଙ୍କର ଥାଣି ହୋଇଗଲା କ୍ଲବ ଘରଆଡ଼େ । କାହାକୁ ମୁହଁ ଦେଖାଇବାକୁ ତାଙ୍କୁ ଲାଜ ମାଡ଼ୁଥିଲା । ସେ କ୍ଲବ ଘରଠାରୁ ବେଶ୍ ଦୂରତ୍ୱ ବଜାୟ୍ ରଖି ଗୋଟିଏ ଅମ୍ବଗଛ ଉହାଡ଼ରେ ଥାଇ ଦଉ ଆଡ଼କୁ ଅନାଇଲେ । ସ୍ୱରଣେଶ୍ୱର ପରି ଖୁବ୍ ଦୁର୍ଦ୍ଦାନ୍ତ ଅଭିମାନୀ ସ୍ୱର ସରପଞ୍ଚଙ୍କର— ବୁଝିଲ ଭାଇମାନେ ! ଆମର ଗ୍ରାମର ଉନ୍ନତି ପଥରେ ଯେ ଅନ୍ତରାୟ ହୋଇ ଛିଡ଼ା ହେବ ଆମେ ତାକୁ ଛାଡ଼ିବୁ ନାହିଁ । ଠିକଣା ଜବାବ ଦେବୁ । ଆମ ଗ୍ରାମର ସେଇ ଲୋକନାଥ ମାଷ୍ଟ୍ରେ ଗ୍ରାମବାସୀଙ୍କୁ ଭୁଲ ରାସ୍ତାରେ କଡ଼ାଇ ନେଉଛନ୍ତି । ଲୋକଙ୍କୁ ଆମ ବିରୁଦ୍ଧରେ ମତାଉଛନ୍ତି । ଆମ ହୁଏତ ଆପଣମାନେ ସହଯୋଗ ନକରି ଆମକୁ ବିରୋଧ କଲେ ଆମେ ଗ୍ରାମର ଉନ୍ନତି କେମିତି କରିବୁ ? ସବୁ ବିଷୟରେ ଆପଣମାନଙ୍କ ସାହାଯ୍ୟ ଦରକାର । ଲୋକନାଥବାବୁ କ'ଣ କରିପାରିବେ ? ଖାଲି ବଡ଼ ବଡ଼ କଥା ଭାଷଣ ଦେବା ଛଡ଼ା ସେ କିଛି କରିପାରିବେନି । ପାଞ୍ଚ ପଇସା ତାଙ୍କ ପକେଟ୍‌ରେ ନାହିଁ, ସେ ପାଞ୍ଚଲକ୍ଷ ଟଙ୍କାର କଥା କହନ୍ତି ।

ପୂର୍ଣ୍ଣ କଳସରେ ବନ୍ଧୁଏ ବାସ ଭଳି ଏ ଗାଁଟାକୁ ଲୋକନାଥବାବୁ ସ୍ଵାହାକ୍ତ କରି-ଦେଇଛନ୍ତି । ସେଗୁଡ଼ିକ ପ୍ରତି ନଜର ନ ଦେଇ ଆମକୁ ଆଗେଇବାକୁ ପଡ଼ିବ । ଲୋକନାଥବାବୁ ଯେତେ ଚେଷ୍ଟା କଲେ ବି ଗ୍ରାମର ତଥା ଆପଣମାନଙ୍କ ଉନ୍ନତିରେ ବାଧା ଦେଇପାରିବେ ନାହିଁ ।

ଏଇ କ୍ଲବ ଘରର ଉପର ଗ୍ରୁଡ ଉଠାଇ ଦିଆଯିବ । ଢ଼ଲେଇ ଗ୍ରୁଡ ହେବ । ଏଥିପାଇଁ ସମସ୍ତ ଖର୍ଚ୍ଚ ମୁଁ ବହନ କରିବି । ଜବାବ ଦେଉଛି, ନହେଲେ ମୁଁ ଗାଁରେ ଅଛି ଅଛି କାହିଁକି ? ଆପଣଙ୍କ ପାଇଁ ମୁଁ ବଞ୍ଚିଛି, ମରିବି ମଧ୍ୟ ଆପଣଙ୍କ ପାଇଁ । —ତା'ପରେ ଠୋ ଠୋ ତାଳି ମାଡ଼ । ଆଉ କିଛି ଶୁଭୁନାହିଁ । ହୋ ହୋ ହୋଇ ଲୋକେ ଖାଲି ପଡ଼ାପଡ଼ି ହେଉଛନ୍ତି। ଲୋକନାଥବାବୁଙ୍କର ମନେହେଲା ସେ ତାଳି ଲୋକଙ୍କର ଦୁଇହାତ ମିଶି ବାଜୁନାହିଁ । ଦୁଇଗାଲରେ ତାଙ୍କର ସେ ହାତ ମାଡ଼ ଆସି ବାଜୁଛି । ଲଜ୍ୟା, ଅପମାନ, ଦୁଃଖରେ ଜର୍ଜରିତ ହୋଇ ଚୋରଙ୍କ ଭଳି ସେ ବାଟକାଟି ଘରମୁହାଁ ହୋଇ ପଳାଇ ଆସୁଥିଲେ । ଦୁଇ ଆଖିରେ ତାଙ୍କର ଅଶ୍ରୁ ଟଳମଳ ହେଉଥିଲା । ଏଇ ପାଠପଢ଼ା ପିଲାଗୁଡ଼ାଙ୍କର ମଧ୍ୟ ନଜର ନାହିଁ । ଆତ୍ମସମ୍ମାନ ନାହିଁ ? କାଲି ଏମାନେ ଥିଲେ କ'ଣ ଆଜି କ'ଣ ହୋଇ ଯାଉଛନ୍ତି !!

ଲୋକନାଥବାବୁ ଅସୁ ଅସୁ ପହଞ୍ଚିଗଲେ ଯୁଧିଷ୍ଠିରବାବୁଙ୍କ ଘରରେ । ଯୁଧିଷ୍ଠିରବାବୁ ହସି ହସି କହିଲେ, କ'ଣ ? ଭାଷଣ ଦେବାକୁ ଯାଇଥିଲ, ନା ଶୁଣିବାକୁ ?

ତମେ ତା'ହେଲେ ସବୁ ଜାଣ ? ସଙ୍କୋଚଶୂନ୍ୟ ଭାବେ କହିଲେ, ଲୋକନାଥବାବୁ । ଏଇ ଗୋଟିଏ ଲୋକ ଆଗରେ ସେ ନିଜକୁ କେବେ ହେଲେ ସାନ କରିନାହାନ୍ତି ।

ଯୁଧିଷ୍ଠିରବାବୁ ମୃଦୁହସି କହିଲେ, ଏଇ ସାମାନ୍ୟ କଥା ମୁଁ ଜାଣିନି । ମୋ' ପୁଅଠାରୁ ଶୁଣିଲି କାଲି ତମ ପାଖକୁ ଯିବାପରେ ସରପଞ୍ଚର ପଇସାବାଲା ଗୁଣ୍ଡା ଟୋକାସବୁ ଏମାନଙ୍କୁ ତାଙ୍କ ପାଖକୁ ଡାକି ନେଇଥିଲେ । ହଜାରେ ଟଙ୍କା କ୍ଲବ ଘର ପାଇଁ ସେମାନଙ୍କ ହାତରେ ଧରାଇ ଦେଇ ଏ ଭାଷଣ ପୂର୍ବରୁ ଗୋଟିଏ ଲେକ୍ଚରିଆ ଭାଷଣ ଦେଇ କହିଥିଲେ— ପଇସା ନଥିବା ଲୋକଙ୍କ ପାଖକୁ ଯାଇ ଲାଭ କ'ଣ ? ତମ କ୍ଲବ ଘରର ଉନ୍ନତି ହେବ ନାହିଁ ଖାଲି ତାଙ୍କର ବାକ୍‌ପଟୁତାରେ । ଯେ କୌଣସି କାର୍ଯ୍ୟ ପାଇଁ ଆବଶ୍ୟକ ଟଙ୍କା । ଯେତେ ଟଙ୍କା ଲୋଡ଼ିବ ମୁଁ ଦେବି । ତମର, ଗାଁର କ୍ଲବର ସମସ୍ତଙ୍କର ଉପକାର ପାଇଁ । ପତାକା ଉତ୍ତୋଳନ କରିବା ନିମନ୍ତେ ମୁଁ ଯିବି, ସବୁ ବୁଝାଇ ଦେଇଥିବି । ପିଲାମାନେ କୃତକୃତ୍ୟ ହୋଇ ନିବେଦନ କରିଥିଲେ, ସାର୍ ! ଆପଣ ସାତଟା ସୁଦ୍ଧା ପ୍ରସ୍ତୁତ ଥିବେ, ଆମେ ଆସି ନେଇଯିବୁ ।

ଲୋକନାଥବାବୁ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ଭାବିଥିଲେ କୂଳରେ ଲାଗିବ ଜୀବନ ତରୀ, ଅଥଚ ବୋଧହୁଏ ସେହି ସଂଗ୍ରାମର ଜଳଧିରେ ସେ ସମାଧିପ୍ରାପ୍ତ ହେବେ । ଆଉ ଆଗକୁ କିଛି ନାହିଁ । ତଥାପି…କହିଲେ, ବୁଝିଲ ସୂର୍ଯ୍ୟମିତ୍ର, ଏଇ ସବୁ ଗୋଳମାଳ, ଝିନ୍‌ଝଟ, ଏପାଖ ସେପାଖ ଭିତରେ ମଧ୍ୟ ମୋର ସାନ୍ତ୍ୱନା କ'ଣ ଜାଣ ? ମୋ' ନାମ ସୁନାମର ସୁଗନ୍ଧରେ ସୁବାସିତ ନହୋଇ ଦୁର୍ନାମରେ ଅପମାନିତ, ଲାଞ୍ଛିତ, ପୂତିଗନ୍ଧମୟ ହୋଇଗଲେ ମଧ୍ୟ ଭୂଲ ଘରଟିର ଯେ ଲାଭ ହୋଇଛି । ଏହା କି ଆନନ୍ଦର କଥା !! ଏହାଛଡ଼ା ଜୀବନରେ ମୁଁ ତ ଅଧିକା କିଛି ଚାହିଁନାହିଁ । ଚାହିଁଛି ଖାଲି ଏଇ ପିଲାମାନଙ୍କୁ, ଏଇ ଲୋକମାନଙ୍କୁ, ଏଇ ଗାଁକୁ… । ସ୍ୱାଧୀନ ହେବା-ପରେ ମୁଁ ଖାଲି ପତାକା ଉଡ଼ିବା ଦେଖିଛି, କେବେ ଉଡ଼େଇ ନାହିଁ…ତା' ବୋଲି ମୁଁ କ'ଣ ସ୍ୱାଧୀନ ନୁହେଁ ???

# କାଦୁଅ

ସୁମିତା ଡାଇନିଂ ଟେବୁଲ ଉପରେ ଗୃହ ସରଞ୍ଜାମ ସଜାଡ଼ୁଥିଲେ । ଯୋଡ଼ା ମତ ମତ କରି ରବୀନ୍ଦ୍ର ତାଙ୍କ ପାଖକୁ ଆସି କଡ଼ାଏ ନୋଟ୍ ତାଙ୍କ ସାମ୍ନାରେ ପକାଇ ଦେଲେ । କହିଲେ, ଯାଅ, ମନଇଚ୍ଛା ପୂଜା ବଜାର କରିଅଣ ।

ସୁମିତା ଅବାକ୍ ହୋଇ ସ୍ୱାମୀଙ୍କ ମୁହଁକୁ ଲକ୍ଷ୍ୟ କଲେ । ଆଜି ସକାଳେ ପୂଜା ବଜାର ପ୍ରସଙ୍ଗ ଉଠାଇବାରେ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ତୁମୁଳ ସଂଗ୍ରାମ ଲାଗି ଯାଇଥିଲା । କଥା କଟାକଟି, ପରସ୍ପରକୁ ଦୋଷ ଦେବା ଏବଂ ଯୁକ୍ତିତର୍କରେ ସକାଳର ବାତାବରଣ ସମ୍ପୂର୍ଣ୍ଣ ନଷ୍ଟ ହୋଇ ଯାଇଥିଲା । ସୁମିତାଙ୍କ ଅଭିଯୋଗ, କେବେ ଆଉ କିଏ କିଣା ହୋଇ ଘରକୁ ଆସିବ ? କେବେ ସେ ସିଲେଇ କରିଦେବ, ପିଲାଏ ପିନ୍ଧିବେ ! ତ'ଛଡ଼ା ପୂଜା ପାଞ୍ଚ ଛଅଦିନ ଥିବା ଆଗରୁ ବଜାର ପଶି ନପାରିଲେ ମହା ଅଡୁଆ, ଅଚ୍ଛା କଟକରେ ଆସି ରହିଛନ୍ତି ଯେ, ଯିଏ ଯୁଆଡ଼େ ଥିବେ ଆସି ପହଞ୍ଚିବେ ଦେବୀ ଦେଖିବା ପାଇଁ । ଅବଶ୍ୟ ନାନା ଆଳ ଦେଖାଇ ସୁମିତା କାହାକୁ ଘରେ ଗନ୍ଧି ପାତନ କରିବାର ସୁବିଧା ଦିଅନ୍ତି ନାହିଁ । ଗାଁରୁ ଆସିଥିବା ଲୋକମାନେ ତାଙ୍କ ହାବଭାବରୁ ସବୁ ଠଉରେଇ ନେଇ ବାଟ ଦେଖନ୍ତି । ସେମାନଙ୍କୁ ସବୁ ଘରେ ପୁରାଇଲେ ଆଉ କ'ଣ ବଜାର ଯିବାକୁ ସମୟ ମିଳିବ ? ପୁଣି ଗୁଡ଼ିଆ ଆସି ଘରେ ମିଠା ତିଆରି କରିବ । ସେଥିପାଇଁ ତା ପାଖରେ ଜଗି ବସିବାକୁ ଗୋଟିଏ ଲୋକ ଦରକାର । ଏତେ ସବୁ ଜଞ୍ଜାଳ ମଧ୍ୟରେ ଆଉ ବଜାର ସମୟ ମିଳିବ କୁଆଡ଼ୁ ?

ବର୍ତ୍ତମାନ ସେ ହୃଷ୍ଟଭାବେ ସ୍ୱାମୀଙ୍କ ମୁହଁକୁ ଚାହାଁଇଲେ । ଫିକ୍ କ'ନା ହସିଦେଇ କହିଲେ, "ମୁଁ ଜାଣେ ତମେ ସବୁ କଥା ସହିପାର, ମୋର ଅପବାଦ ସହି ପାରନା ।"

—ତମେ ମତେ ଅପବାଦ ଦେଇ ଥାଆନ୍ତୁ ନା କଣ ?

—ଅପବାଦ ନୁହେଁ ଯଦିଓ; କଥାଟା ସେଇଭଳି ତୁମକୁ ଲାଗି ଥାଆନ୍ତା ।

ସୁମିତା, ମତେ କଣ ଟୋକ ଏ ମାଷ୍ଟର କି କରଣୀ ବୋଲି ଭାବିଲ କି ? ଦାଏକର ପନ୍ଦର ଦିନ ନ ଯାଉଣୁ ବ୍ୟାଗ ଧରି ଧାରୁ ସଉଦା ଆଣିବାକୁ ଯାଇ ଦୋକାନ ଆଗରେ ଦାନ୍ତ ନେଫେଡ଼ି ଗୋଡ଼ଭାଙ୍ଗି ଛିଡ଼ା ହେବ । ଆମ ଚାକିରଟା କ'ଣ ଜାଣିଛ ? ଚାଲିଗଲେ ପଇସା । ପଇସା ଆଉ ଇଜ୍ଜତ ଅନ୍ୟ କୋଉ ଚାକିରରେ ଏପରି ନାହିଁ ।

ସେକଥା ମୁଁ ଜାଣିଛୁ । ମୋ ବାପା ବ ପୋଲିସ ଚାକିରି କରୁଥିଲେ ।

—ହଉ ହଉ, ତମେ ଆଉ ତମ ବାପାଙ୍କ ଉଦାହରଣ ଦିଅନାହିଁ । ପୋଲିସ ଚାକିରି ପାଇଁ ସେ ଫିଟ୍ ନୁହଁନ୍ତି । ସେ ବରଂ ମାଷ୍ଟର ହୋଇଥିଲେ ଭଲ ହୋଇଥାଆନ୍ତା । ଉପହାସ କରି କହିଲେ ରବୀନ୍ଦ୍ର ।

—କଣ କହିଲ ? ଗର୍ଜନରେ ଜଳି ଉଠିଲେ ସୁମିତା, ମୋ ବାପାଙ୍କୁ ତମେ ଅନ୍‌ଫିଟ୍ କହିବ ? ତମର ଏତେ ସାହସ !

—ଓହୋ—ରାଗି ଯାଉଛ କାହିଁକି ? ଇଙ୍କମ୍ ପାଉଥିଲେ ଏକଥା ସତ, କିନ୍ତୁ ଏମିତ ବଡ଼ା ବଡ଼ା ନୋଟ ଆଣୁଥିଲେ ?

—ମୋ ବାପାଙ୍କ ଅମଳରେ ଏତେ ଚୋର ଡକାୟତ ନଥିଲେ, ବଡ଼ା ବଡ଼ା ନୋଟ୍ ଆଣିବେ କେଉଁଠୁ ?

—ମାନେ ! ମୁଁ କଣ ଚୋର ଡକାୟତଙ୍କ ଠାରୁ ବଡ଼ା ବଡ଼ା ନୋଟ ଆଣୁଛୁ ?

—ଆଉ କଣ ? ଚୋର ତ ଚୋର । ଚୋରଙ୍କ ବାପା ହେଲେ ପୋଲିସ । ଚୋର ମାନେଅନ୍ତି ଜନତାଠାରୁ, ତାଙ୍କଠୁ ମାରି ନିଅନ୍ତି ପୋଲିସ । ସୁମିତାଙ୍କ ଉତ୍ତରରେ ହୁହୁଁ ହସି ଉଠିଲେ ଜୋର୍‌ରେ । ରାଗ ରୁଷା ଚାଲିଗଲା, ସନ୍ଧି ହୋଇଗଲା ଏଇ ହସରେ ।

ସନ୍ଧ୍ୟା ବେଳକୁ ବେଶଭୂଷା ହୋଇ ରିକ୍‌ସାରେ ଦୁଇ ପିଲାଙ୍କୁ ଧରି ବଜାର ବାହାରିଲେ ସୁମିତା । ବଡ଼ଟ ବ୍ୟାଗରେ ଟଙ୍କାଯାକ ଭର୍ତ୍ତିକରି କାନ୍ଧରେ ଝୁଲାଇ ଦେଲେ । ଝିଅ କହିଲା—"ମା ! ବେଶୀ ଟଙ୍କା ଆଣିଛ ତ ? ମୋର ନୂଆ ଚପଲ ମଧ୍ୟ କିଣା ହେବ ।"

ସୁମିତା ବିରକ୍ତ ହେଲେ; କହିଲେ, ଦେଖି ପାରୁନୁ ମୋର ସବୁଠାରୁ ବଡ଼ ଭ୍ୟାନିଟି ବ୍ୟାଗଟା ଆଣିଛୁ ? ଚାଲ୍ ଚାଲ୍ ରିକ୍‌ସାରେ ବସ । ଅନେକଆଡ଼େ ଯିବାର ଅଛି । ସୁମିତା ଘରୁ ବାହାରିଯିବା ପରେ ନିର୍ମଳ ହସି ହସି ଆସି ରବୀନ୍ଦ୍ରଙ୍କ ପାଖ ଚେୟାରରେ ବସି ପଡ଼ିଲେ । କହିଲେ, ଭାଉଜ କୁଆଡ଼େ ବାହାରିଲେ ଗଲେ ଯେ ପିଲାଙ୍କୁ ନେଇ ସଙ୍ଗରେ ?

—ବଜାର, ବୁଝିଲ୍, ପୂଜା ବଜାର । ଦଶହରା ଆଉ କେଇଟା ଦିନ ରହିଲା । ଆଗରୁ ସେସବୁ ଜିନିଷ ନ ଜୁଟାଇଲେ ମୋ ମୁଣ୍ଡ ଗୋଳମାଳ କରିଦେବେ ସୁମିତା, ଏତେ ପାଲ ଭିତରକୁ କିଏ ଯାଏ !

—ବୁଝିଲୁ ରବୀନ୍ଦ୍ର, ତୁ ଗୋଟାଏ ଖାଣ୍ଟି ପୁରୁଷ, ଭାଉଜଙ୍କୁ ତୋର ଖାଲି ଭୟ ।

—ଭାଉଜଙ୍କୁ ନୁହେଁରେ । ଭାଉଜଙ୍କ ଅପବାଦକୁ ! ତୁ ବାହା ହୋଇନୁ ନିର୍ମଳ, ହେଲେ ଜାଣିବୁ, ସ୍ତ୍ରୀ ପାଖରେ ଶ୍ରେଷ୍ଠ ହୋଇଯିବା କି ଅପମାନ ଏବଂ ଲଜ୍ଜାଜନକ ବ୍ୟାପାର ! ପୁରୁଷ ନିଜର ଅପାରଗପଣିଆ, ମା, ବାପା ଭାଇ ଭଉଣୀଙ୍କ ସମ୍ମୁଖରେ ଦେଖାଇପାରେ, ସ୍ତ୍ରୀ ପାଖରେ ନୁହେଁ । ସବୁ ସମୟରେ ସେ ଚାହେଁ ଯେ ସ୍ତ୍ରୀ ଆଗରେ ବଡ଼ ହୋଇ ରହିବ । ତା'ର ସମସ୍ତ ଆବଶ୍ୟକତା ପୂରଣ କରିବ । ତା'ଠୁ ଖାତିର୍ ପାଇବ ।

—ସବୁ ସ୍ତ୍ରୀଙ୍କର ଏତେ ଆବଶ୍ୟକତା ନଥାଏ କି ସବୁ ପୁରୁଷ ଏମିତି ସ୍ତ୍ରୀର ଅପବାଦକୁ ଭୟ କରନ୍ତି ନାହିଁ । ରବୀନ୍ଦ୍ର କଥାକୁ ଉଡ଼ାଇ ଦେଲେ ନିର୍ମଳ ।

—ଦେଖିବୁ, ଦେଖିବୁ । ଆଗେ ବାହାହୁଅ । ଅଧିକ ଜୋର୍‌ରେ କହିଲେ ରବୀନ୍ଦ୍ର ।

—ଛାଡ଼ ସେ କଥା । ମୁଁ ତୋ ପାଖକୁ ଗୋଟାଏ ଜରୁରୀ କାର୍ଯ୍ୟରେ ଆସିଛି । ଗମ୍ଭୀର ଦେଖାଗଲା ନିର୍ମଳଙ୍କ ମୁହଁ ।

—ଜରୁରୀ କାର୍ଯ୍ୟ !

—ରବୀନ୍ଦ୍ର ! ଟଙ୍କା ଖାଇବାର ଗୋଟାଏ ସୀମା ଅଛି । ସବୁ ଚାକିରିରେ କିଛି ଉପୁରି କେହି କେହି କରନ୍ତି । ତଥାପି ଦେଖିବାରେ ଭଲ ମନ୍ଦର ବିଚାର ରହିବା ଦରକାର । ପାପ ପୁଣ୍ୟର ହିସାବ ରଖିବା ଉଚିତ୍ । ତୁ ଯାହା କରୁଛୁ ଭଲ କରୁନୁ ।

—ମାନେ । କଣ ତୁ କହିବାକୁ ଚାହୁଁ ?

—ଉତ୍ତେଜିତ ହୁଅନା । ମନଦେଇ ଶୁଣ—ତୋର ସ୍ତ୍ରୀ ପିଲାମାନେ ପୂଜା ବଜାର କରିବାକୁ ଗଲେ । ମନଇଚ୍ଛା ଖୁସିରେ ଯେ ଯାହାର ଜିନିଷ କିଣି ଆଣି ପାରିବେ । ତମ ଘରେ ପୂଜାରେ ଆନନ୍ଦର ରୋଳ ଉଠିବ । ଆଉ ସେମାନଙ୍କ ପାଇଁ କ'ଣ ପୂଜା ଆସିବନି, ଯା, ଦେଖି ଆସିବୁ ତାଙ୍କ ଘରେ କିଭଳି ଅବସ୍ଥା । ସେଇ ଝିଅଟିର ଅଶ୍ରୁଳ ମୁହଁ ଦେଖିଲେ ପାଷାଣ ମଧ୍ୟ ତରଳିଯିବ ।

—କେଉଁ ଝିଅ । କାହା କଥା ତୁ କହୁଛୁ ?

—ନଜାଣିବାର ଛଳନା କରନା ରବୀନ୍ଦ୍ର । ମୁଁ ସବୁକଥା ଜାଣେ । ଝିଅଟିର ଭାଇ ସହିତ ମୁଁ କଥାବାର୍ତ୍ତା କରିଛି । ସେ ଆମ ଘରକୁ ଆସେ । ତା'ଠାରୁ ସବୁକଥା ଶୁଣି ତୋ ପାଖକୁ ଆସିଛି ।

—ଆସିଛୁ ତ ଭଲ କରିଛୁ, ଚା' ଖାଇ ଯା । ରବୀନ୍ଦ୍ର ନିର୍ମଳ କଥାକୁ ଖାତିର ନକରି କହିଲେ—ଚା' ଖାଇବାରେ ମୋର ଆଗ୍ରହ ନାହିଁ । ତା'ଠାରୁ ସବୁ କଥା ଶୁଣିବା ପରେ

ମୋ ମନ ଖରାପ ହୋଇଯାଇଛି । ଖାଲି ନିଜ କଥା ଭାବିଲେ ହେବନାହିଁ ରବୀନ୍ଦ୍ର । ସମାଜରେ ଅନ୍ୟମାନଙ୍କ ପ୍ରତି ମଧ୍ୟ ସମସ୍ତଙ୍କର କର୍ତ୍ତବ୍ୟ ରହିଛି ।

—ସମାଜର କେଉଁଟା ଲୋକଙ୍କର ଦୁଃଖ ତୁ ହରଣ କରିପକାଇବୁ ?

—ଯେତିକି ଆମ ଆଖି ଆଗକୁ ଆସିବ । ଶୁଣ, ତୁ ଜଣେ ପୋଲିସ ଅଫିସର । ଆମମାନଙ୍କଠାରୁ ଅଧିକ କର୍ତ୍ତବ୍ୟବୋଧ ସମାଜ ପ୍ରତି ତୋର ରହିବା ଉଚିତ୍ ।

—ପୋଲିସ ହେଲି ବୋଲି କ'ଣ ମୁଁ ଜଣେ ଦେବତା ? ମୋର ଅଛି କାମ, କ୍ରୋଧ, ଲୋଭ, ମାୟା, କିଛି ନାହିଁ !

—ଦେବତା ନ ହୋଇପାରୁ, ଅନ୍ତତଃ ମଣିଷ ହୁଅ ।

—ତୁ କ'ଣ କହୁଛୁ, ମୁଁ ଗୋଟାଏ ପଶୁ ?

—ପଶୁ ନୁହେଁ ମଣିଷ । କିନ୍ତୁ ପଶୁ ପ୍ରବୃତ୍ତି ହିଁ ମଣିଷକୁ ପଶୁ ସ୍ତରକୁ ନେଇ-ଆସେ ସତ୍ୟକୁ ହିଁ ପୂଜା କରିବା ମଣିଷର ସର୍ବଶ୍ରେଷ୍ଠ ଗୁଣ ।

—ସତ୍ୟ । ହାଃ ହାଃ ହୋଇ, ହସିଲେ ରବୀନ୍ଦ୍ର ! ସେ କେଉଁ ପଶୁ ନା ପକ୍ଷୀର ଅଣ୍ଡା, ଯାହାକୁ ଲୋକେ ଖାଲି କଳ୍ପନା କରନ୍ତି । ଦେଖିନାହାନ୍ତି କେବେ ।

—ସତ୍ୟ କେଉଁ ଜୀବଜନ୍ତୁର ଅଣ୍ଡା ନୁହେଁ । ସିଏ ହେଉଛି ସୁଖ, ଆନନ୍ଦ ଏବଂ ସୌଭାଗ୍ୟ ଫୁଲର ମଞ୍ଜି ।

—ବାସ୍ ବାସ୍ । ତୋର କବିତ୍ୱ ବନ୍ଦ କର । କ'ଣ ଶୁଣି ଆସିଛୁ କହ ?

—ଶୁଣ । ଝିଅଟି କଲେଜରେ ଅଧ୍ୟାପିକା ଚାକିରି କରେ । ପୂଜା ଅବକାଶ ପାଇ ଘରକୁ ଆସିଛି । ତାଙ୍କ ଘରେ ମୂରବୀ କେହି ନ ଥିବାରୁ ତାକୁ ହିଁ ସବୁ କାମ କରିବାକୁ ପଡ଼େ । ଏ ସାହିର କେତେଟା ଗୁଣ୍ଡା ବଦମାସ ପ୍ରକୃତିର ପିଲା ସବୁବେଳେ ଏ କଥା ଲକ୍ଷ୍ୟ କରି ଆସିଛନ୍ତି । ତାଙ୍କ ଦରକାର ଥିଲା ସାଇର ପ୍ରାପ୍ୟ ଶେଷ ମୁଣ୍ଡକୁ । ମୁଖ୍ୟ ରାସ୍ତାରୁ କିଛିଟା ଦୂର । ଦୁଇଦିନ ତଳେ ସିଏ ଯାଇଥିଲା ବଜାର କରିବାକୁ । ଫେରିଲା ବେଳକୁ ରାତି ହୋଇଯାଇଥିଲା । ଏମାନେ ତାକୁ ଅନ୍ଧାରରେ ଆକ୍ରମଣ କରି ସବୁ କିଛି ଛଡ଼ାଇ ନେଇଛନ୍ତି । ଏପରିକି ସତ୍‌କାର୍ଯ୍ୟ ଗହଣା ସେ ପିନ୍ଧିଥିଲା, ସେସବୁ ମଧ୍ୟ । ପୁଣି ଧମକ ଦେଇଛନ୍ତି ଏ ବିଷୟରେ କାହାକୁ କିଛି କହିଲେ, ତାକୁ ତା' ଭାଇ ଏବଂ ବାପାଙ୍କ ପାଖରୁ ଛଡ଼ାଇ ନେଇଯିବ । ଝିଅଟିର ଭାଇ କାନ୍ଦି କାନ୍ଦି ଆସି ତୋ ନିକଟରେ ଏ ବିଷୟରେ ଅଭିଯୋଗ କରିଥିଲା । କିନ୍ତୁ ତୁ କିଛି ପ୍ରତିକାର ନ କରି ଏ ପର୍ଯ୍ୟନ୍ତ ନୀରବ ରହିଛୁ । ମୁଁ ଭାବୁଛି, ସେମାନଙ୍କଠାରୁ ବୋଧହୁଏ କିଛି ମୋଟା ଅଙ୍କରେ ପାଇଛୁ ।

—ମାନେ ତୁ କ'ଣ କହିବାକୁ ଚାହୁଁ, ହେଉ ବଦମାସ୍ ପିଲାଙ୍କଠାରୁ ମୁଁ ଟଙ୍କା ଖାଇ ନୀରବ ରହିଛି ? ରାଗରେ କମ୍ପି ଉଠିଲେ ରବୀନ୍ଦ୍ର ।

—ନିର୍ମଳ ନୀରବ ରହିଲେ । ଲକ୍ଷ୍ୟକଲେ ରବୀନ୍ଦ୍ରଙ୍କର ପ୍ରତିକ୍ରିୟା ।

—ରବୀନ୍ଦ୍ର ରାଗରେ ଥର ଥର କହିଲେ, ଏ କଥା ବି ଉଡ଼େ ସେଇ ଝିଅଟିର ଭାଇ କହିଛି । —ମୁଁ ଟଙ୍କା ଖାଇଛି ଏହାର ପ୍ରମାଣ କ'ଣ ?

—ସବୁ କଥା ପ୍ରମାଣ କରାଯାଇ ପାରେନା । ବିଶ୍ୱାସ କରାଯାଏ । ନିର୍ମଳ ଶାନ୍ତ ସ୍ୱରରେ କହିଲେ ।

—ରବୀନ୍ଦ୍ର ଖୁବ୍ ଉତ୍ତେଜିତ ହୋଇ ପଡ଼ିଥିଲେ । ଟେବୁଲ ଉପରେ ଗୋଟିଏ ବିଧା ମାରି କହିଲେ କେଉଁଥିରୁ ସତ୍ୟାସତ୍ୟ ବିଚାର କରାଯିବ ?

—ଲୋକର ଚରିତ୍ରରୁ ।

—ତୁ ମୋ ଚରିତ୍ର ଉପରେ ମିଥ୍ୟାରୋପ କରୁଛୁ ?

—ତୋ ଚରିତ୍ରରୁ ନୁହେଁ । ସେଇ ଝିଅଟିର ଚରିତ୍ରରୁ । ସେ କେବେ ମିଛ କହିବ ନାହିଁ ।

—କାହିଁକି ନ କହିବ ? ଏ ପିଲାମାନେ ତାକୁ ହଇରାଣ କରନ୍ତି । ତାଙ୍କପ୍ରତି ପ୍ରତିଶୋଧ ନେବା ଆଶାରେ ସେ ଏପରି ମନଗଢ଼ା କାହାଣୀ କହି ପାରିଥାଏ ।

—ମନଗଢ଼ା କାହାଣୀ କିଏ ଅନ୍ୟ ଆଗରେ କହିପାରେ । ନିଜ ନିଜ ଭିତରେ କୁହାକୁହି ହୋଇ କବାଟ ବନ୍ଦକରି ନିଜ ଘରେ କାନ୍ଦେନା । ଚାଲ୍ ମୋ ସାଙ୍ଗରେ । ଦେଖି ଆସିବୁ ସେମାନଙ୍କର ଦୁର୍ଦ୍ଦଶା ।

—କାହା ଘରକୁ ଯାଇ ଦେଖି ଆସିବାକୁ ମୋର ସମୟ ନାହିଁ । କିନ୍ତୁ ତୁ କାହିଁକି ତା' ପାଇଁ ଏତେ ଓକିଲତି କରୁଛୁ ?

—କରୁଛି ମାନବିକତା ଦୃଷ୍ଟିରୁ ।

—ଖାଲି ମାନବିକତା ନା ଆଉ କିଛି ? ତୁ ମଧ୍ୟ ସେମାନଙ୍କଠାରୁ କିଛି ଆଦାୟ କରିଛୁ ?

—ରବୀନ୍ଦ୍ର ! ନିର୍ମଳ ନିଜକୁ ସଂଯତ କରିପାରିଲେ ନାହିଁ ।

—ଆହା ! ତୁ ତ ମତେ ବେଶ୍ କହିପାରୁଛୁ । ମୁଁ କହିଲେ କାହିଁକି ସହି ପାରୁନୁ । ରବୀନ୍ଦ୍ର ତାଚ୍ଛଲ୍ୟ କରି କହିଲେ ।

—କାରଣ, ତୁ ଜାଣୁ ମୁଁ କ'ଣ ? ଆଉ ମୁଁ ଜାଣେ ତୁ କ'ଣ ?

—ତା'ହେଲେ ଝଙ୍ଗା ଖାଇବା କଥା ଥାଉ । ଝିଅଟି ସହିତ ତୋର ଅନ୍ୟ କିଛି ସମ୍ପର୍କ ଅଛି ନା କ'ଣ ?

—ରବୀନ୍ଦ୍ର ! ତୁ ସୀମା ବାହାରକୁ ଚାଲିଯାଉଛୁ । କିନ୍ତୁ ମୁଁ କହିଦେଉଛି, ସାବଧାନ୍ । ତୁ କଡ଼ଲେଖା ଅଭ୍ଭୁତ ଦେଖାଇ କାର୍ ଚଲାଇ କାଦୁଅ ରାସ୍ତାରେ ଚାଲିଗଲେ କାଦୁଅ ଛିଟା ଯେ ଖାଲି ଅନ୍ୟ ଉପରେ ପଡ଼ି ସେମାନଙ୍କୁ ଅସୁବିଧାରେ ପକାଇବ ତା' ନୁହେଁ, ତୋ କାର୍ର ଚକ ମଧ୍ୟ କେବେ ଗଭୀର କାଦୁଅରେ ଏପରି ଭାବେ ପଶିଯିବ ଯେ ତୁ ମହା ବିପଦରେ ପଡ଼ିବୁ । ଯେଉଁମାନଙ୍କ ଉପରକୁ କାଦୁଅ ଛିଟା ପକାଇ ଚାଲିଯାଉଥିଲୁ ସେମାନେ କେହି ତତେ ସାହାଯ୍ୟ କରିବାକୁ ଆଗେଇ ଆସିବେ ନାହିଁ । ଓଲଟା ତାଳି ମାରି ହସିବେ ।

—ଯା ଯା, ତୋର ଏଇ ମୂଲ୍ୟବାନ ସଂଳାପଗୁଡ଼ାକ କେଉଁ ସିନେମା ନିର୍ଦ୍ଦେଶକ ଆଗରେ କହିବୁ । ନାଁ ହେବ । ଓଡ଼ିଆ ସିନେମାରେ ଭଲ ସଂଳାପର ଘୋର ଦୁର୍ଭିକ୍ଷ !

ପୂଜା ଆସିଗଲା । ସପ୍ତମୀ, ଅଷ୍ଟମୀ, ନବମୀ । ପୂଜା ସରିଗଲା । ସୁମିତାଙ୍କ ପରିବାରରେ ସୁଖ ଆନନ୍ଦର ଝରଣା ବୋହିଯାଉଛି । ପ୍ରାଣପ୍ରାଚୁର୍ଯ୍ୟର ବାରିଧାରା ସମସ୍ତଙ୍କ ଦେହ ମନ ସିକ୍ତ କରି ଝରିପଡ଼ୁଛି । ଅତିଥି ଅଭ୍ୟାଗତଙ୍କ ଯିବା ଆସିବା ଲାଗି ରହିଛି । ସୁମିତାଙ୍କର ସହରରେ ଅନେକ ସଙ୍ଗିନୀ । ସମସ୍ତେ ଆସି ସୁମିତାଙ୍କର ଭାଗ୍ୟକୁ ଖୋଲିଖୋଲି ପ୍ରଶଂସା କରିଯାଉଛନ୍ତି । ବଜାରରୁ ଆଣିଥିବା ସବୁ ଜିନିଷ ପସନ୍ଦ କରୁଛନ୍ତି ଖୁବ୍ ଭଲ ଭଲ ହୋଇଛି ବୋଲି । ସୁମିତା ଭିତରେ ଗର୍ବ ଅନୁଭବ କରୁଛନ୍ତି । ମା ଦୁର୍ଗା ତାଙ୍କ ପ୍ରତି କେତେ ସଦୟ ହୋଇଛନ୍ତି ! ପ୍ରତିବର୍ଷ ଏଇ ସାଇରେ ହେଉଥିବା ଦୁର୍ଗା ପୂଜାରେ ସମସ୍ତଙ୍କ ଅପେକ୍ଷା ଅଧିକ ଚାନ୍ଦା ଦିଅନ୍ତି ସୁମିତା । ରବୀନ୍ଦ୍ରଙ୍କର ସମୟ ନ ଥିଲେ ମଧ୍ୟ ବାଧ୍ୟକରି ତାଙ୍କୁ ପଠାନ୍ତି ଦେବୀଙ୍କୁ ପୂଜା ଦେଇ ଆସିବା ପାଇଁ । ଆଜି ଦଶହରା, ଦେବୀ ପୂଜା ସରିଯିବ । ସୁମିତାଙ୍କର ଆଖି ଛଳ ଛଳ ହୋଇ ଆସିଲା । ଏଇ ସାଇ ମଣ୍ଡପରେ ଜମିଯାଇଥିବା କୋଳାହଳ କାଲି ସକାଳେ ନୀରବ ପଡ଼ିଯାଇଥିବ । ପୂଜା ନିମନ୍ତେ ଯେତେ ଦୋକାନ ବଜାର ବସିଛି କାଲିକୁ ସେସବୁର ଚିହ୍ନବର୍ଣ୍ଣ ନ ଥିବ । ପୁଣି ସେଇ ଶୂନ୍ୟ ପଡ଼ିଆ ପଡ଼ିରହିବ ଆରବର୍ଷ ପର୍ଯ୍ୟନ୍ତ ଏଇ ଦିନକୁ ଅପେକ୍ଷା କରି ।

ସୁମିତା ତର ତର ହୋଇ ଘରକାମ ସାରୁଛନ୍ତି । ଆଜି ଦେବୀଙ୍କ ପାଖରେ ଯାତ୍ରା ହେବ ! ପୂଜା କମିଟିର ଲୋକମାନେ ତାଙ୍କୁ ସେ ବେଶୀ ଚାନ୍ଦା ଦିଅନ୍ତି ବୋଲି ଘରେ ଆସି ସ୍ୱତନ୍ତ୍ର ନିମନ୍ତ୍ରଣ ଦେଇ ଯାଇଛନ୍ତି । ରବୀନ୍ଦ୍ର ଘରେ ନାହାନ୍ତି । ତାଙ୍କର ଆଜି ମୋଟେ ଫୁରସତ ନାହିଁ । ଏତେବଡ଼ ଜନଗହଳିପୂର୍ଣ୍ଣ ସହରରେ ନାଗରିକମାନଙ୍କର ସୁରକ୍ଷା ଦାୟିତ୍ୱ

ବାହନ କରିବା ସହଜ କଥା ନୁହେଁ । ସେ ଯୋଗ୍ୟ ଅଫିସର ସୁମିତାଙ୍କ ମତରେ । ତାଙ୍କର ଯୋଗ୍ୟତା ପାଇଁ ତ ସୁମିତା ସୌଭାଗ୍ୟଶାଳିନୀ ।

ପ୍ରାୟ ରାତି ବାରଟା ବେଳକୁ ଯାତ୍ରା ଆରମ୍ଭ ହେଲା । କଷ୍ଟ୍ୟୁମ୍ ଯେତିକି ହେଲେ ମଧ୍ୟ ଅଭିନେତାମାନେ ଭଲ ଅଭିନୟ କରୁଥିଲେ । ଦୃଶ୍ୟ ପରେ ଦୃଶ୍ୟ ସଂଘଟିତ ହେଉଥିଲା । ହଠାତ୍ ଲୋକମାନଙ୍କର ସମସ୍ତ କ୍ରନ୍ଦନ, ଆନନ୍ଦ, ଆଗ୍ରହ ଉପରେ ବଜ୍ରପାତ ହେଲା ଭଳି ଲାଇଟ୍ କଟିଗଲା । ସମସ୍ତେ ହୋ ହୋ ହୋଇ ବସିବା ସ୍ଥାନରୁ ଉଠିପଡ଼ିଲେ । ସୁମିତାଙ୍କ ଝିଅ ସୁଶ୍ରୀ ତା ସାଙ୍ଗମାନଙ୍କ ନିକଟରେ ବସି ଯାତ୍ରା ଦେଖୁଥିଲା । ଲାଇଟ୍ ଲିଭିଯିବା ପରେ ସେ ହଠାତ୍ ଆତଙ୍କିତ ହୋଇ ଉଠିଲେ । ସାମ୍ନାରେ ବଡ଼ବଡ଼ ଗୁଣ୍ଡାଶ୍ରେଣୀର ଟୋକାଗୁଡ଼ା ହୁରିସିଲ ମାରି କାନ ଫଟେଇ ଦେଉଛନ୍ତି । ସୁମିତା ଭୟରେ ଶିହରି ଉଠିଲେ । ସୁଶ୍ରୀକୁ ସେ ଅଲଗା ବସାଇବା ଠିକ୍ ହୋଇନାହିଁ । ଏ ପିଲାମାନେ ଯେପରି ଉଚ୍ଛୃଙ୍ଖଳ ହେଉଛନ୍ତି କିଏ ଜାଣେ କି ଅଘଟଣ ଘଟାଇ ଦେବେ !

ସୁମିତାଙ୍କ ଆଶଙ୍କାକୁ ସତ୍ୟରେ ରୂପାନ୍ତରିତ କରି ହଠାତ୍ ଅନ୍ଧାର ଭିତରେ ଲୋକମାନଙ୍କର ସମ୍ମିଳିତ ସ୍ୱର ଶୁଭିଲା ସାପ…ସାପ…ସେମାନଙ୍କ ଆତଙ୍କ ଓ ଚିତ୍କାରକୁ ଉପହାସ କରି ଅଧିକର ଦ୍ରୁତରେ ହେଲା ବଦମାସ୍ ପିଲା ଗୁଡ଼ାଙ୍କର ତାଳିମାଡ ଏବଂ ହୁରିସିଲ୍ ଶବ୍ଦ । ପାଟିଗୋଳରେ କେହି କାହା କଥା ଶୁଣି ପାରୁନାହାନ୍ତି । ସୁମିତା କେତେ ଜୋର୍‌ରେ ଚିତ୍କାର କରି ସୁଶ୍ରୀକୁ ଡାକିବେ !!—ମା ଦୁର୍ଗା ! ତୁହି ଭରସା । ଜାଣି ଜାଣି ସାପ ପକାଇଛନ୍ତି ସେମାନେ ।

ପୂଜା ମଣ୍ଡପରେ ପେଟ୍ରୋମାକ୍ସ ଜାଳିବାକୁ ପ୍ରାୟ ଦଶ ମିନିଟ ଲାଗିଗଲା । ସଙ୍ଗେ ସଙ୍ଗେ ଲାଇଟ୍ ମଧ୍ୟ ଜଳି ଆସିଲା, ଠିକ୍ ସେତିକି ବେଳେ ଯେଉଁଠାରେ ସୁଶ୍ରୀ ବସିଥିଲା ସେଇଠି ଝିଅଗୁଡ଼ାଏ ହଠାତ୍ ଆତଙ୍କରେ ଚିତ୍କାର କରି ଉଠିଲେ । ସୁମିତା ଲକ୍ଷ୍ୟ କଲେ ଗୋଟିଏ କଳା କାର୍‌କୁ ଲୋକମାନେ ଘେରି ଯାଉଛନ୍ତି । କିନ୍ତୁ କାର୍ ଷ୍ଟାର୍ଟ ଦେଇ ମୁହୂର୍ତ୍ତକ ମଧ୍ୟରେ ଅଦୃଶ୍ୟ ହୋଇଗଲା । ଠିକ୍ ସେତିକିବେଳେ ରବୀନ୍ଦ୍ର ମଟରସାଇକେଲ ଧରି ଫେରୁଥିଲେ । ଲୋକମାନେ ତାଙ୍କୁ ଦେଖି ଚିତ୍କାର କଲେ । —ତାଙ୍କୁ ଧରନ୍ତୁ ସାର୍ ତାଙ୍କୁ ଧରନ୍ତୁ ଆଜ୍ଞା, ସେମାନେ ଗୋଟିଏ ଝିଅକୁ ନେଇ ପଳାଉଛନ୍ତି । ରବୀନ୍ଦ୍ର ସବୁ କଥା ବୁଝି ସାରିଥିଲେ ସେତେବେଳକୁ । ଏପରି ଘଟଣା ଏମାନଙ୍କ ପାଇଁ ଅଭିନବ ହେଲେ ମଧ୍ୟ ତାଙ୍କ ପାଇଁ କିନ୍ତୁ ନୁହେଁ । ସେ ସଙ୍ଗେ ସଙ୍ଗେ ମଟର ସାଇକେଲ ଧରି କାର୍ ପଛରେ ଛୁଟାଇ ଦେଲେ, ରାସ୍ତା ଏତେ ପରିଷ୍କାର ନ ଥିଲା । ରବୀନ୍ଦ୍ର କାର୍ ନିକଟକୁ ଆଗେଇ ଆସୁଥିଲେ । ଏଣିକି ରାସ୍ତା ପ୍ରାୟ ନିର୍ଜନ ହୋଇ ଆସୁଛି । ରବୀନ୍ଦ୍ର ସୁବିଧା ଦେଖି କାର୍ ଆଗକୁ ଚାଲିଗଲେ, ରାସ୍ତା ପୁଣି ସହଳ ହୋଇ ଆସିଲା । କାର୍ ଆଉ ଆଗକୁ ଯାଇପାରିଲା ନାହିଁ ।

—

କାର୍‌ର ସବୁ କାଚ ବନ୍ଦ ଥିଲା । ଏତେ ଜନ ସମାଗମ ମଧ୍ୟରେ କାର୍‌ର ଭିତରର ଦୃଶ୍ୟ କିଛି ସେ ଦେଖିପାରୁ ନଥିଲେ ! ଶବ୍ଦ ବି କିଛି ଶୁଣି ପାରୁନଥିଲେ । କିନ୍ତୁ କାର୍ ଚଳାଉଥିବା ଲୋକଟାର ମୁହଁକୁ ଦେଖି ସେ ଚମକି ପଡ଼ିଲେ । ହଁ, ସେଇ ଲୋକ ! ଯାହା-ଠାରୁ ବଡ଼ାଏ ନୋଟ୍ ନେଇ ସେ ଜିଦ୍‌ଦର୍ପରେ ସୁମିତାଙ୍କ ସମ୍ମୁଖରେ ଫୋପାଡ଼ି ଦେଇଥିଲେ ! ଅଜି ସେଥିରେ ତାଙ୍କ ଘର ପୂଜାରେ ସରଗରମ ହୋଇ ଉଠିଛି, ଖାଇବା, ପିଇବା, ବୁଲିବା ମନ୍ତ୍ରଜ ମଜଲିସରେ ।

ରବୀନ୍ଦ୍ର କ'ଣ କରିବେ ହଠାତ୍ କିଛି ସ୍ଥିର କରିପାରିଲେ ନାହିଁ । ଯାହାଠାରୁ ଥରେ ଉତ୍କୋଚ ଗ୍ରହଣ କରିଛନ୍ତି ପୁଣି ତାକୁ ଗିରଫ କରିବେ କେଉଁ ମୁହଁରେ ? ତାଙ୍କ କପାଳର ଶିରାଗୁଡ଼ିକ ଉତ୍ତେଜନାରେ ଠିଆ ଠିଆ ହୋଇଗଲା । ଧମନୀରେ ରକ୍ତର ପ୍ରବାହ ଚଞ୍ଚଳ ହୋଇ ଉଠିଲା, ସେ କିଛି କହିବା ପୂର୍ବରୁ କାଚ ଅଳ୍ପ ଖସାଇ ଲୋକଟି କହିଲା— ଅଫିସର, ଛାଡ଼ିଦିଅ ଆମକୁ । ଏଥର ଅହୁରି ବେଶୀ ପାଇବ । ପର ମୁହୂର୍ତ୍ତରେ ବଡ଼ାଏ ନୋଟ୍ ଆସି ତାଙ୍କ ଉପରେ ପଡ଼ିଲା । ତଳକୁ ଖସି ଯାଉ ଯାଉ ହାତରେ ଧରିପକାଇଲେ ରବୀନ୍ଦ୍ର ନୋଟ୍ ବଡ଼ାଟା ।

କ୍ଷଣିକ ମଧ୍ୟରେ ତାଙ୍କ ମନରେ ଲୋଭର ତରଙ୍ଗ ଖେଳିଗଲା । ଶତ ସୂର୍ଯ୍ୟର ରଶ୍ମିରେ ଯେପରି ଝଲସି ଉଠିଲା ଚକ୍ଷୁ ଦୁଇଟି । ପର ଲାଗିଲା ପରି ମନଟା ତାଙ୍କର ଉଡ଼ିଗଲା ସେଇ କ୍ଷଣକରେ ସୁମିତାଙ୍କ ପାଖକୁ । ଆଜି ଦଶହରା ପରି ଦିନରେ ଅଜିର ବଡ଼ାଏ ନୋଟ ଦେଖିଲେ ସୁମିତା ଆହୁରି ସନ୍ତୋଷରେ ନାଚି ଉଠିବେ । ଦୁନିଆରେ କେତେ ଦୁର୍ଘଟଣା ଏପରି ଘଟି ଯାଉଛି । ସବୁ ଦୁର୍ଘଟଣାକୁ ଫେର୍ କିଛି ହୋଇ ନଥିବାପରି ପୁଣି ସଜାଡ଼ି ଦେଇ ହେଉଛି ! ସେ ଏକା ସାଧୁ ସାଜିଲେ ପୃଥିବୀଟା ବଦଳି ଯିବ ନାହିଁ । ତାଙ୍କ ଭଳି ଦୁନିଆଁରେ ଅହୁରି ଅନେକ ଅଛନ୍ତି । ଟଙ୍କାର ମୋହ କାଟି ସେ ଏଇ ଦୁର୍ବୃତ୍ତମାନଙ୍କୁ ଛାଡ଼ି ନଦେଲେ ପୃଥିବୀରୁ ପାପ ଉଠିଯିବ ନାହିଁ । ସବୁକାଳରେ ଯୁଗ ଏହା ପରି ଚାଲିବ । ଓଠ ଉପରେ ଜିଭ ବୁଲାଇ ଆଣି ସେ ମଟର ସାଇକେଲ ଦୁଲାଇ ଆଣି ଷ୍ଟାର୍ଟ ଦେଲେ । ସଙ୍ଗେ ସଙ୍ଗେ କାର୍‌ଟିର ଇଞ୍ଜିନ ମଧ୍ୟ ଗର୍ଜି ଛୁଟିଲା କଳିଯୁଗ । ଅଜି ସେହି ଗର୍ଜନ ଭିତରେ ଲୁପ୍ତ ହୋଇଗଲା ଜଣକର ନିଃଶ୍ୱାସ ପ୍ରଶ୍ୱାସର ଝଡ଼ ।

ବଙ୍ଗଳା ଗେଟରେ ମଟର ସାଇକେଲ ବ୍ରେକ୍ କରି ଓହ୍ଲାଇଗଲେ ରବୀନ୍ଦ୍ର । ଗୃହ-ଅଙ୍ଗ ଶୁନଶାନ୍ । ପାଦେ ପାଦେ କରି ସେ ଘର ଆଡ଼କୁ ମୁହାଁଇଲେ । ଭିତରୁ କେତେ ଗୁଡ଼ା କୋଳାହଳ ଭାସି ଆସୁଛି । ତାଙ୍କ ଘର ଭିତରେ ଏତେ ଲୋକ କୁଆଡ଼ୁ

ଅସିଲେ ? କିଏ ଯେପରି କାନ୍ଦ କାନ୍ଦ ନିସ୍ତେଜ ହୋଇ ଯାଇ ହିକ୍‌କା ମାରୁଛି । କିଏ କାନ୍ଦୁଛି । ଏତେ ରାତିରେ ତାଙ୍କ ଘର ଭିତରେ କିଏ ସେ କାନ୍ଦୁଛି ! ସୁମିତା !!

ଅସହ୍ୟ ଉତ୍କଣ୍ଠାରେ ରବୀନ୍ଦ୍ରଙ୍କ ମନ ଥର ଥର ହୋଇ କମ୍ପି ଉଠିଲା । ଭୟାକ୍ରାନ୍ତ ପଦରେ ସେ ଘର ଭିତରେ ପ୍ରବେଶ କଲେ ! ବାରଣ୍ଡାରେ ଅର୍ଦ୍ଧଚେତନ ଅବସ୍ଥାରେ ପଡ଼ିଛନ୍ତି ସୁମିତା, ପାଇର ପ୍ରାୟ ସବୁ ସ୍ତ୍ରୀଲୋକ ତାଙ୍କୁ ଘେରି ବସିଛନ୍ତି । କଣ ହେଲା ସୁମିତାଙ୍କର ? ରବୀନ୍ଦ୍ରଙ୍କର ନିଃଶ୍ୱାସ ଗୁଡ଼ରେ ଅଟକି ଗଲପରି ବୋଧହେଲା ।

ତାଙ୍କୁ ଦେଖି ସୁମିତା ଯେପରି ଚୈତନ୍ୟ ଫେରି ପାଇଲେ । ଚିତ୍କାର କରି କାନ୍ଦ କାନ୍ଦ ଅସି ତାଙ୍କ ପାଦ ପାଖରେ କଚୁଡ଼ି ହୋଇ ପଡ଼ିଲେ । ସର୍ବନାଶ ହୋଇଗଲା ମୋର' ରବୀନ୍ଦ୍ର କିଛି ବୁଝି ପାରୁନଥିଲେ । ସେ ସୁମିତାଙ୍କର ବାହୁଧରି ହଲାଇଦେଇ ଆର୍ତ୍ତ ସ୍ୱରରେ ପ୍ରଶ୍ନକଲେ, ସୁମିତା ! କଣ ହୋଇଛି, କୁହ ।

—"ସୁଶ୍ରୀ ଆଉ ନାହିଁ । ତାକୁ ସେଇ ବଦମାସ ଗୁଣ୍ଡା ପିଲଗୁଡ଼ାକ ଉଠାଇନେଇ ଚାଲି ଯାଇଛନ୍ତି କାର୍‌ରେ, ଯେଉଁ କାର୍ ପଛରେ ତମେ ଧାଇଁ ଯାଇଥିଲ, କଣ ପାରିନାନ୍ତି କାର୍‌କୁ ଧରି ? ସୁଶ୍ରୀକୁ ବାପ ହୋଇ ତମେ ରକ୍ଷା କରିପାରିଲନି—ମୁଁ କଣ କରିବି"? ଦୁଇ ହାତରେ ଗୁଡ଼ ବାଡେଇବାକୁ ଲାଗିଲେ ସୁମିତା ।

ତଟସ୍ଥ ରବୀନ୍ଦ୍ର, କିଂକର୍ତ୍ତବ୍ୟବିମୂଢ଼ । ଅନେକ ସମୟ ନୀରବରେ କଟିଗଲା । ତା' ପରେ ଦୁଇ ହାତରେ ମୁଣ୍ଡ ବାଳକୁ ମୁଠାଇ ଧରି ଝିଙ୍କିବାକୁ ଲାଗିଲେ ସେ, ତାଙ୍କ ଆଖିରୁ ରକ୍ତ ବାହାରିଯିବ ଯେପରି, ହୁଏତ ତାଙ୍କର ହୃତ୍‌ଯନ୍ତ୍ରକ୍ରିୟା ବନ୍ଦ ହୋଇଯିବ । ସେ କଣ କରିଛନ୍ତି ! କାହାକୁ କହିବେ ସେ ଏଠାରେ ତାଙ୍କ ଅନ୍ତରର ଦହନ ! ବଡ଼ାଏ ନୋଟ ପରିବର୍ତ୍ତେ ସେ ଜାଣି ଶୁଣି ନିଜର କନ୍ୟାକୁ ବଳୀ ମୁହଁକୁ ଠେଲିଦେଇ ଅସିଛନ୍ତି । ଅର୍ପଣ କରିଛନ୍ତି ସେଇ ଦୁର୍ବୃତ୍ତିଗୁଡ଼ାଙ୍କ ହାତରେ । ସେ ଚଣ୍ଡାଳ ଟଙ୍କାକୁ ଦେଖିଲେ । ଗାଡ଼ି ଭିତରେ କୋଣକୁ ପଡ଼ିଥିବା ଝିଅଟିକୁ ଦେଖିଲେ ନାହିଁ । ଭଗବାନଙ୍କର ତାଙ୍କ ପ୍ରତି କେତେ ବଡ଼ ଅଭିଶାପ ! ଭାଗ୍ୟର କି ନିଷ୍ଠୁର ବିଡ଼ମ୍ବନା !

ରବୀନ୍ଦ୍ର ସ୍ଥାଣୁ ପାଲଟି ଯାଇଥିଲେ । ତାଙ୍କ ଗୋଡ଼ ଦୁଇଟା ଯେପରି ଅଚଳ ମହାମେରୁ । ଆଖିରୁ ଜ୍ୟୋତି ଅପସରି ଯାଉଛି । "ରବୀନ୍ଦ୍ର ! ! ପଡ଼ିଗଲୁନା କାଦୁଅରେ ଅଉ ଉଠିପାରୁନୁ ? ତତେ ବାରମ୍ବାର କହୁଥିଲି କାଦୁଅ ଭିତର କେଇ ଯା'ନା । ସବୁ-ବେଳେ ଅନ୍ୟମାନଙ୍କ ଉପରେ କାଦୁଅ ଛିଟା ପକାନା । ନିଜେ ପଡ଼ିଯିବୁ କାଦୁଅରେ, କେହି ତତେ ଉଦ୍ଧାର କରିବାକୁ ଅସିବେ ନାହିଁ ।" କିଏ କହୁଛି ତାଙ୍କ ଭିତରେ ଥାଇ !!! କିଏ !! କିଏ ! ନିର୍ମଳ !!

# ଦୂର ସନ୍ନିକଟ

ନରେଶ ବାବୁଙ୍କର ସବୁଯାକ ରାଗ ସେଇ ଦୁଇଚକିଆ ଢଙ୍ଗିବା ସାଇକେଲ୍‌ଟା ଉପରେ ଯେଉଁଟାକି ମନ୍ଦାକିନୀ ଯୌତୁକ ହିସାବରେ ତାଙ୍କ ବାପଘରୁ ଆଣିଥିଲେ ! ଏହା ବ୍ୟତୀତ ସେପରି ଉଲ୍ଲେଖନୀୟ ଜିନିଷ ଆଉ କିଛି ନଥିଲା । ସାଇକେଲ୍‌ଟା ସେ ଚାହିଁଥିଲେ କେବଳ ଅଫିସ ଯିବା ଆସିବା ସୁବିଧା ହେବ ବୋଲି । ଅସଲ କଥା ହେଲା, ସେ ରହନ୍ତି ଗୋଟିଏ ଗ୍ରେଟିଆ ସହରରେ- ଅଫିସ ହେଲା ଭୁବନେଶ୍ୱରରେ, ବାପ ମା, ଛେଉଣ୍ଡ ପୁଅ, ପର ଘରେ ମଣିଷ ହୋଇ ସାଇକେଲ କିଣି ସେଥିରେ ଯିବା ଆସିବା ତାଙ୍କ ପକ୍ଷରେ ସ୍ୱର୍ଗରୁ ଚାନ୍ଦ ତୋଳିବା ଭଳି, ତେଣୁ ବାହାଘର ପ୍ରସ୍ତାବ ଯେଉଁଠାରେ ପଡ଼ୁଥିଲା, ପ୍ରଥମେ ସାଇକେଲ କଥାଟା ହିଁ ଉଠା ଯାଉଥିଲା ।

ଅବଶ୍ୟ ସାଇକେଲ୍‌ଟା ସେପରି କିଛି ବଡ଼ ଜିନିଷଟାଏ ନଥିଲା । ଯେଉଁ ଉଦାର ହୃଦୟସମ୍ପନ୍ନ ମହାଶୟ ଜଣକ ତାଙ୍କୁ ମଣିଷ କରିଥିଲେ, ଦରମା ପାଇ ସେଥିରୁ ନିଜେ ଚଳିବା ପାଇଁ ରଖି ଅବଶିଷ୍ଟ ସେ ତାଙ୍କ ହାତରେ ଧରାଇ ଦେଉଥିଲେ । ତେଣୁ ଇଚ୍ଛା କରି ସାଇକେଲ କିଣିବା କଥା ସେ ଭୁଲି ଯାଇଥିଲେ । ଦ୍ୱିତୀୟରେ, ତାଙ୍କର ଏପରି ସ୍ଥାନରେ ବିବାହ ପ୍ରସ୍ତାବ ପଡ଼ୁଥିଲା ଯାହା ପକ୍ଷରେ ସାଇକେଲଟାଏ ମଧ୍ୟ ଯୌତୁକ ଆକାରରେ ଦେବା ଏକ ବଡ଼ ସାମର୍ଥ୍ୟ ବୋଲି ଧରାଯାଉଥିଲା । ଅନ୍ୟ ଏକ କଥା, କନ୍ୟାପକ୍ଷ ମନେ କରୁଥିଲେ ସାମାନ୍ୟ ସାଇକେଲଟାଏ କିଣିବାର ଯାହାର ଯୋଗ୍ୟତା ନାହିଁ, ସେ ଘରେ ଝିଅ ଖାଇବାର ପାଇବ କି ନାହିଁ ସନ୍ଦେହ ! ଉଚ୍ଚ ଘରବାର ସହିତ ସମ୍ବନ୍ଧ ଯୋଡ଼ିବାର ଯୋଗ୍ୟତା ବା ଆଭିଜାତ୍ୟ ତାଙ୍କର ନଥିଲା ।

ଅବଶ୍ୟ ମନ୍ଦାକିନୀ କେବେ ଶ୍ରେଷ୍ଠ ଘରର ଝିଅ ନୁହନ୍ତି । ଅତୀତରେ ତାଙ୍କ ଜେଜେ ବାପା ବଡ଼ ଜମିଦାର ଥିଲେ । ଦଶ ପନ୍ଦର ଖଣ୍ଡ ଗାଁ ଉପରେ ତାଙ୍କର ଜମିଦାରୀ ହୁକୁମ ଚାଲୁଥିଲା । କିନ୍ତୁ ମନ୍ଦାକିନୀଙ୍କ ବେଳକୁ ସେସବୁ ଜମିଦାରୀ ଅଡ଼୍‌ଡ଼ା ଚଉଡ଼ା ଆଉ ନଥିଲା । ତଥାପି ଏବେ ମଧ୍ୟ କଥା କଥାକେ ତାଙ୍କ ଜେଜେ ବାପାଙ୍କର କଣ କିପରି ଆଦବ କାଇଦା ଥିଲା, ତାର ଉଦାହରଣ ସେ ଦିଅନ୍ତି । ସେଥିପାଇଁ ସାଇକେଲ ପ୍ରତି ଥିବା ରାଗତକ ଯାଇ ଆଉ ଯାହା ବଳେ ସେ ପଡ଼େ ଯାଇ ମନ୍ଦାକିନୀଙ୍କ ଉପରେ !

ନରେଶବାବୁ ରାଗିଯାଇ ଚଡ଼ାଗଳାରେ କହନ୍ତି, ମୋର କଣ ନାହିଁ, ମୋ ଅମୁକର ଅଛି । ବୁଝିଲ, ସେଇଟା ଆଉ ବଖାଣି ବସନାହିଁ । ଲୋକେ ହସିବେ । ଏ ସାଇକେଲଟା ବୋଧହୁଏ ସେଇ ଜମିଦାରୀ ଅମଳର ।

କଣ କହିଲ ? ମନ୍ଦାକିନୀ ଚିତ୍କାର କରି କହନ୍ତି ରାଗରେ । ସାଇକେଲଟା ଖରାପ ? ନା ତମେ ସାଇକେଲ ଚଢ଼ିବାର ଯୋଗ୍ୟ ନୁହଁ ! ଯନ୍ତ୍ରପାତି ଲଗା ଜିନିଷଟା ଖରାପ ହେବ ନାହିଁ ? ପଇସା ଖର୍ଚ୍ଚ କରି ତାକୁ ମରାମତି କଲେ ଯିନା ହେବ ! ମଣିଷ ଦେହଟା ଫେର୍ ରୋଗରେ ପଡ଼ୁଛି । ଔଷଧ ଖାଇଲେ ପୁଣି ଭଲ ହେଉଛି । ଜିନିଷଟା କେମିତି ବିଗଡ଼ି ନଯିବ ମ !

ନରେଶବାବୁ ସାମାନ୍ୟ ଦବିଯାଆନ୍ତି । ତଥାପି ନିଜର ସମ୍ମାନ ଜାକି ରଖିବାକୁ ଯାଇ ଆହୁରି ବଡ଼ ପାଟିରେ ଚିତ୍କାର କରନ୍ତି — ଯା ଯା··· ଷ୍ଟେସନଟା ଖାଲି ଏଠାରୁ ଦୂର ବୋଲି ଏଇଟାକୁ ସହି ସମ୍ଭାଳି ରଖିଛି । ନହେଲେ କେବେ ଠାରୁ ଭଙ୍ଗା ଲୁହା ଲକଡ଼ କିଣୁଥିବା ଲୋକଙ୍କୁ ବିକ୍ରୀ କରି ଦେଇ ସାରନ୍ତିଣି । ବୁଝିଲ, କଲେ ପ୍ରତି ଦଶ ପଇସା ।

ପ୍ରତିଦିନ ଏଇ ପାଲି । ସକାଳୁ ଉଠି ଦାନ୍ତ ଘଷିବା ଯେପରି ନିତ୍ୟ ନୈମିତ୍ତିକ କାର୍ଯ୍ୟ, ସାଇକେଲ ନେଇ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ଝଗଡ଼ାର ତାନ ଛୁଟିଯିବା ମଧ୍ୟ ସେହି-ପରି ଗୋଟିଏ ।

ପିଲମାନେ ବଡ ହେଲେଣି । ବାପା, ମା'ଙ୍କର ଏଇ ଝଗଡ଼ାବେଳେ ଯେ ଯାହାର ମୁହଁ ଲୁଚାଇ ଦେଇ ରହନ୍ତି । ବାପାଙ୍କୁ ଭରସି କରି କିଛି କହିପାରନ୍ତି ନାହିଁ କି, ବୋଉକୁ ଚୁପ୍ କରାଇ ପାରନ୍ତି ନାହିଁ । ଷୀର ମନକୁ ଉତୁରି କିଛି ଚୂଲରେ ପଶିଯିବା ପରେ ଚୁପ୍ ଚାପ ହାଣ୍ଡିରେ ଫୁଟିବାପରି, ନରେଶବାବୁ ଘରୁ ବାହାରି ଗଲାପରେ ସବୁ ଚୁପ୍ ଚାପ୍ ହୋଇଯାଏ । ତା ପୂର୍ବରୁ ଦୁହିଁଙ୍କୁ ଚୁପ୍ କରାଇବାର କ୍ଷମତା କାହାର ନାହିଁ ।

କେବଳ ଏଇ ସାଇକେଲ ନେଇ ପରସ୍ପର ଯୁକ୍ତିତର୍କ କରିବା ବ୍ୟତୀତ ଅନ୍ୟ କୌଣସି ବିଷୟରେ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ କେବେ ପାଟିତୁଣ୍ଡ ହୁଏନାହିଁ । ହୁଅନ୍ତା ବି ନାହିଁ, ଯଦି ନରେଶ ବାବୁଙ୍କୁ ଘରଠୁ ଷ୍ଟେସନ ଯାଇ ଅଫିସ ଯିବାକୁ ନହୁଅନ୍ତା ଟ୍ରେନ୍‌ରେ ।

ସବୁଦିନେ ଷ୍ଟେସନରେ ପହଞ୍ଚିଲା ବେଳକୁ ଡେରି । ନରେଶବାବୁ ସହଜେ ସାମାନ୍ୟ ଅଳସୁଆ । ଯେ ନୁଆଁ ଜେ ସ୍କୁଲ କଲେଜ ବାହାରି ଗଲାପରେ ସେ ସାଇକେଲଟା

ଧରି ବାହାରନ୍ତି । ରାସ୍ତାରେ କାଏ କେଉଁଠି ଦେଖା ହୋଇଗଲେ ଗୋଡ଼ ଲଗାଇ ମାଇକେଲ ଅଟକାଇ ପାଞ୍ଚ ଦଶମିନଟ ଗପରେ ଲାଗି ଯାଆନ୍ତି । ଷ୍ଟେସନରେ ପହଞ୍ଚିଲା-ବେଳକୁ ଗାଡ଼ି ଚାଲିଯାଇଥାଏ । ପରବର୍ତ୍ତୀ ଟ୍ରେନ ଧରି ଅଫିସରେ ପହଞ୍ଚିଲା ବେଳକୁ ହୋଇଯାଏ ଡେରି, ପଡ଼ିଯାଏ ଗାଳିଗାଳ । ବଡ଼ବାବୁ କୈଫିୟତ ମାଗନ୍ତି । ଉତ୍ତରରେ ନରେଶ-ବାବୁଙ୍କର ହେଲା ଗୋଟିଏ କଥା, ସାର୍ ! କଣ କରିବି ? ଘରଟା ଷ୍ଟେସନଠାରୁ ବହୁତ ଦୂର ।

—ଘରଟା ଷ୍ଟେସନଠାରୁ ଦୂର ବୋଲି କ'ଣ ଅଫିସ ଦାୟୀ ନା ମୁଁ ? ଅନ୍ୟମାନଙ୍କ ଘର କଣ ଏଇ ଅଫିସ ପାଚେରୀକୁ ଲାଗିଛି ? ଘରେ ନାହିଁ ଅଧେ ନାହିଁ, 'ସବୁଦିନ ଆପଣଙ୍କର ଡେରି, ଅଫିସ ସମୟ ହାତରେ ରଖି ପୂର୍ବରୁ ଘରୁ ବାହାରୁ ନାହାନ୍ତି କାହିଁକି ?

ମନେ ମନେ ଲଜ୍ଜିତ ହୁଅନ୍ତି ନରେଶବାବୁ । ନିଜ ଯାଗାକୁ ଆସି କାନ ମୋଡ଼ି ପ୍ରତିଜ୍ଞା କରନ୍ତି—ନା···କାଲିଠାରୁ ଅନ୍ୟକଥାରେ ମୁଣ୍ଡ ନପୂରାଇ ଶୀଘ୍ର ଆସି ସେ ଅଫିସ ଟାଇମ୍ ପୂର୍ବରୁ ତାଙ୍କ ଚେୟାରରେ ବସିପଡ଼ିବେ ।

ନରେଶବାବୁ ଠିକ୍ କଲେ, ସେ ବଡ଼ବାବୁଙ୍କ ଆଗରେ ଗୁହାରି କରିବେ ଷ୍ଟେସନ ପାଖରେ କମ୍ପାନୀର ତିଆରି ହୋଇଥିବା ନୂଆ କ୍ୱାର୍ଟରଗୁଡ଼ାକ ମଧ୍ୟରୁ ଅନେକ ଖାଲି ପଡ଼ିଛି, ସେଥିରୁ ଗୋଟାଏ ଯଦି ତାଙ୍କୁ କରାଇ ଦିଅନ୍ତେ, ତେବେ ସବୁ ସମସ୍ୟାର ସମାଧାନ ହୋଇଯାଆନ୍ତା । ଜୀବନରେ କେବେ ଆଉ ଅଫିସରେ ପହଞ୍ଚିଲାବେଳାକୁ ବିଳମ୍ବ ହୁଅନ୍ତା ନାହିଁ ।

ପରଦିନ ଅଫିସରେ ପହଞ୍ଚି ନିଜ ସାଥୀ କର୍ମଚାରୀଙ୍କ ସମ୍ମୁଖରେ ଏକଥା ଉପସ୍ଥାପନ କଲେ ନରେଶବାବୁ । ଜଣେ ସାଙ୍ଗ କହିଲେ, ଆପଣ କଥାଟାକୁ ଏତେ ସହଜ ମନେକରନ୍ତୁ ନାହିଁ ଆଜ୍ଞା । ବଡ଼ବାବୁଙ୍କୁ ଆପଣ ଯେପରି ମନେ କରୁଛନ୍ତି ସେ ସେପରି ନୁହନ୍ତି । ଠାକୁରଙ୍କୁ ଭୋଗ ନବାଡ଼ି ମଧ୍ୟ ଆପଣ ଯଦି ବଳକରେ ଡାକିବେ, ସେ ଶୁଣିବେ, କିନ୍ତୁ ବଡ଼ବାବୁ ବିନା ଭୋଗରେ କେବେ କାହାର ଗୁହାରି ଶୁଣନ୍ତି ନାହିଁ ।

ନରେଶବାବୁ କଥାଟାର ଅନ୍ତର୍ନିହିତ ଅର୍ଥଟା ହୃଦୟଙ୍ଗମ କଲେ । ନିଜର ସ୍ୱଳ୍ପ ବେତନ କଥା ଚିନ୍ତାକରି ସେ ମନେ ମନେ ହତୋତ୍ସାହ ହୋଇପଡ଼ିଲେ । କେତେଅବା ତାଙ୍କର ଦରମା ! ସେଥିରେ ପୁଣି ଏତେବଡ଼ ପରିବାର । ଦୁଇପୁଅ, ଗୋଟିଏ ଝିଅ, ଆଉ ମନ୍ଦାକିନୀ । ସମସ୍ତେ ସ୍କୁଲ୍ କଲେଜରେ ପଢ଼ୁଆ ପିଲା । ସେମାନଙ୍କ ପାଠପଢ଼ା ଖର୍ଚ୍ଚ,

ଘର ଚଳାଇବା ଖର୍ଚ୍ଚ, ପୁଣି ଅନ୍ୟାନ୍ୟ ଆନୁଷଙ୍ଗିକ ବ୍ୟାପାର ତୁଲାଇବା ପରେ ପଇସା ବଞ୍ଚିବ କଣ, ବରଂ ଧାର ହୋଇଯାଇଥାଏ । ସେଥିରେ ଅଧିକ ଟଙ୍କା ସେ କେଉଁଠୁ ଆଣିବେ, ବଡ଼ବାବୁଙ୍କୁ ଲାଞ୍ଚଦେବା ନିମନ୍ତେ !!

ପିଲମାନଙ୍କୁ ପିଲାଦିନରୁ ନିଜେ ସେ ନୀତିଶିକ୍ଷା ଦେଇ ଆସିଛନ୍ତି, ଜୀବନରେ କେବେ ମିଥ୍ୟାର ଆଶ୍ରୟ ନେବ ନାହିଁ । କାହାକୁ ଖୋସାମତ କରି ନିଜର ଆତ୍ମ ସମ୍ମାନ ବଳି ଦେବ ନାହିଁ । ଲାଞ୍ଚ ଯାଚ କାହା ପାଖରେ ନିଜର ଅପାରଗତା ପ୍ରକାଶ କରିବ ନାହିଁ । ଅଥଚ ଆଜି କେମିତି ସେ ନିଜେ ଲାଞ୍ଚ ଯାଚିବେ ବଡ଼ବାବୁଙ୍କୁ ?

ପୁନର୍ବାର ନିଜ ମନକୁ ସାନ୍ତ୍ୱନା ଦେଇ ବୁଝାଇଲେ ଯେ, ଏଠାରେ ଲାଞ୍ଚ ଯାଚିବାଟା କିନ୍ତୁ ଅନ୍ୟ ଧରଣର । ଅଫିସକୁ ଡେରି କରି ଯିବା ଫଳରେ ବଡ଼ବାବୁ ଅସନ୍ତୁଷ୍ଟ, ତେଣୁ ସେ ତାଙ୍କର କାର୍ଯ୍ୟ ଦକ୍ଷତା ସମ୍ବନ୍ଧରେ ଭଲ ରିପୋର୍ଟ ଦେଇ ପାରୁ-ନାହାନ୍ତି । ଅଫିସରେ ସେ ସମସ୍ତଙ୍କଠାରୁ ବିଳମ୍ବରେ ପହଞ୍ଚନ୍ତି ବୋଲି ପିଅନଠାରୁ ଅଫିସରଙ୍କ ପର୍ଯ୍ୟନ୍ତ ସମସ୍ତେ ଅବଗତ । ଏହି କାରଣରୁ ତାଙ୍କର ପ୍ରମୋଶନ ହୋଇ ପାରୁ ନାହିଁ । ଦରମା ବଢ଼ୁନାହିଁ । ସେ ଯଦି ଗୋଟିଏ ମାସ ପିଲଙ୍କୁ ହଇରାଣ କରି ବା ନିଜେ ସାମାନ୍ୟ କଷ୍ଟରେ ଚଳି କିଛି ଟଙ୍କା ବଞ୍ଚାଇ ବଡ଼ବାବୁଙ୍କୁ ଦେଇ ପାରନ୍ତେ । ଭବିଷ୍ୟତରେ ତେବେ ଆଉଟିକେ ସୁବିଧାରେ ଚଳିବା ତାଙ୍କ ପକ୍ଷରେ ସମ୍ଭବ ହୋଇ ପାରନ୍ତା । ତା ଛଡ଼ା ସେ ତ କିଛି ଅନ୍ୟାୟରେ ଲାଞ୍ଚ ଦେଉ ନାହାନ୍ତି ।

କଥାଟା ସେ ଆସି ଘରେ ମନ୍ଦାକିନୀଙ୍କୁ କହିଲେ । ମନ୍ଦାକିନୀ ଶୁଣି ରାଗରେ ଫଁ ଫଁ ହୋଇ ଗର୍ଜି ଉଠିଲେ । କହିଲେ, କଣ କହିଲ ? ଲାଞ୍ଚ ଦେବ ? ଇଏ କୋଉ ଗାଁ କଥା ? ନିଜେ ଡେରି କରି ଅଳସୁଆ ହୋଇ ଅଫିସରେ ପହଞ୍ଚୁଛ, ସେଥିରେ ମୋର ଦୋଷ, ମୋ-ପିଲମାନଙ୍କର ଦୋଷ, ସାଇକେଲର ଦୋଷ, ନିଜକୁ ନ ସୁଧାରି ବଡ଼ବାବୁଙ୍କୁ ଲାଞ୍ଚ ଦେବ କାହିଁକି ?

ନରେଣବାବୁ କହିଲେ—ହଁହୋ, ଖାଲି ରାଗିଯାଇ ବଡ଼ପାଟି କରିବା ତମର ଅଭ୍ୟାସ । ତମେ ଜମା କଥାଟା ବୁଝୁନା ତମେତ କହିବ ପିଲମାନେ ଖାଲି ପଢ଼ିବେ, ଆଉ କୌଣସି କାମ କରିବେ ନାହିଁ । ବଜାର କରିବାଠୁ ଅଫିସ କାମ ପର୍ଯ୍ୟନ୍ତ ସବୁ ଦାୟିତ୍ୱ ତ ଏକା ମୋର ଉପରେ । ପିଲଙ୍କୁ ପଇସା ହାତରେ ଦେଇ ବଜାର ପଠାଇଲେ ପିଲ ନଷ୍ଟ ହୋଇଯିବେ, ପଇସାମୁହାଁ ହୋଇଯିବେ । ଘର ବାହାରର ଯାବତୀୟ କଥା ବୁଝି ଅଫିସ ଗଲାବେଳକୁ ମୋର ଡେରି, ନାଲିଗାର ପଡ଼ୁଛି । ତୃକଳରେ କିଛି ଉନ୍ନତ

ନାହିଁ । ଦରମା ସେତକ ସେତକ, ଏଥିରେ ଭବିଷ୍ୟତ ଆଶା କେମିତି କରିବା ? ଝିଅଟିଏ ଅଛି । ଆଜିକାଲି ଯୁଗରେ ଗୋଟିଏ ଝିଅକୁ ବାହାଦେବା ଅର୍ଥ ସର୍ବସ୍ୱାନ୍ତ ହୋଇଯିବା । ମନ୍ଦାକିନୀ ଚୁପ୍ ହୋଇଗଲେ । କଥାଟାକୁ ଟିକେ ତଳେଇ କରି ଚିନ୍ତା କଲେ । ଭାବିଲେ—ସତେତ, ସବୁଦିନେ କଣ ପିଲାମାନେ ଏତିକି ହୋଇ ରହିଥିବେ ? କାଲି ସକାଳେ ସେମାନେ ଅହୁରି ବଡ଼ ହୋଇ ଯିବେ । ସେମାନଙ୍କର ଆବଶ୍ୟକତା ଦିନକୁ ଦିନ ବଢ଼ିବ । ଝିଅଟିର ବିବାହ ଅଛି । ସେତେବେଳେ ଯେ ଏତେ ସବୁ ଖର୍ଚ୍ଚ ତୁଲାଇବେ କେମିତି ?

ମନ୍ଦାକିନୀଙ୍କୁ ଚୁପ୍ ରହିବା ଦେଖି ନରେଶ ବାବୁଙ୍କର ଆଉ ଟିକେ ଉତ୍ସାହ ବଢ଼ିଗଲା । ସେ କହିଲେ—କଣ, ମୋ କଥା ଠିକ୍ ନା ? ମନ୍ଦାକିନୀ କହିଲେ, ଠିକ୍ ହେଉ କି ଭୁଲ୍ ହେଉ, ଆମେ ଟଙ୍କା ଆଣିବା କେଉଁଠୁ ? ଗୋଟାଏ ପଇସାତ ବଳୁନାହିଁ ହାତରେ । —ବଳେଇବାକୁ ପଡ଼ିବ, ଗୋଟାଏ ମାସ କଷ୍ଟ କରିବାକୁ ପଡ଼ିବ । ନରେଶବାବୁ କଥାରେ ଜୋରଦେଇ କହିଲେ ।

କଷ୍ଟ ! କଣ ଗୋଟାଏ ମାସ ପିଲାଙ୍କ ଦରମା ଦେବ ନାହିଁ, ନା ଉପାସ ରହିବ ? ମନ୍ଦାକିନୀ ଆଶ୍ଚର୍ଯ୍ୟ ହୋଇ କହିଲେ ।

—ନା ଉପାସ ନୁହେଁ, ଟିକେ ଖର୍ଚ୍ଚ କମାଇ ଦେବାକୁ ହେବ । ନରେଶ ବାବୁ ମନେ ମନେ କଣ ହିସାବ କଲାଭଳି କହିଲେ । ମନ୍ଦାକିନୀ ଅଣ୍ଡା ପଡ଼ି ଆସିଥିଲେ, ପୁଣି ରାଗିଯାଇ କହିଲେ, ତମ ଘରେ କଣ ଖର୍ଚ୍ଚ ହୁଏ କି ... ଯାହାତ ଖର୍ଚ୍ଚ କରୁଛ ଗୁଡ଼ା, ଆହୁରି ସେଥିରୁ କେତେ କମେଇବ ? ଗୋଟିଏ କାମ କର, ସାଇକେଲଟା ଉପରେତ ଏତେ ଚଢ଼ୁଛ, ମତେ ଉପରଉଛ, ଯେତେ କଲା ଖାଲି ସେଇ ସାଇକେଲକୁ ନେଇ, ସେଇଟାକୁ କାହାକୁ ଦେଇଦିଅ । ନରେଶବାବୁ କାବା ହୋଇଯାଇ କହିଲେ, ଦେଇଦିଅ ମାନେ ?

ମାନେ ..ମାନେ ବୁଝି ପାରୁନ ? ସେଇଟାକୁ ବିକ୍ରୀ କରିଦିଅ, ଆଉ ସେଇ ଟଙ୍କା ଦେଇଦିଅ ବଡ଼ ବାବୁଙ୍କୁ ।

—ଭଲ କଥା କହିଲ, କ୍ୱାଟର୍ସ ପାଇବା ପୂର୍ବରୁ ସାଇକେଲଟା ବିକି ଦେବି, ଆଉ ପାଇବା ପର୍ଯ୍ୟନ୍ତ ଷ୍ଟେସନକୁ ଯିବି କେମିତି ? ଚାଲି ଚାଲି ? ନରେଶ ବାବୁ ଚଢ଼ିଯାଇ କହିଲେ ।

—ନିଜେତ କହୁବ କିଛି କଷ୍ଟ କରିବାକୁ ହେବ । ତାଙ୍କ ଚତୁର ବକୁ ଖାତିର ନକରି ଚଟ୍ କରି ମନ୍ଦାକିନୀ ଉତ୍ତରଦେଲେ ।

ନରେଶ ବାବୁଙ୍କ ପାଟିକୁ କଥା ଆସିଲ ନାହିଁ । ମନ୍ଦାକିନୀ ଖୁବ୍ ଚତୁର, ତାଙ୍କ ଗାର ପୁଣି ତାଙ୍କୁ ନିକ୍ଷେପ କରୁଛନ୍ତି । ଏଥର ରାଗିବାର ପାଳି ତାଙ୍କର । ରାଗିଯାଇ ସେ କହିଲେ, ବେଶ ତାହାହିଁ କରିବ । କଷ୍ଟ କରିବ । କାହାପାଇଁ ମୁଁ ଗୃକିରି କରୁଛି ? ନିଜ ପାଇଁ ଖାଲି ? ତମ ପାଇଁ ନୁହେଁ ? ସବୁଯାକ କଷ୍ଟ ଖାଲି ମୁଁ ଏକା କରିବି ? ତମକୁ ସବୁ ସୁଖରେ ରଖିବା ପାଇଁ ? ମନ୍ଦାକିନୀ ଆଉ କଥା ନବଢ଼ାଇ ଉଠି ଚାଲିଗଲେ ।

ନରେଶ ବାବୁ ସେ ରାତିଟା ଖାଲି ଚିନ୍ତାରେ ବିତାଇ ଦେଲେ । ସାଇକେଲ୍ ସେ ବିକିବେ କାହାକୁ ? କିଏ ନେବ ଏ ପୁରୁଣା ସାଇକେଲ୍ ? ନା, ପ୍ରଥମେ ସାଇକେଲଟାକୁ ମରାମତି କରିବାକୁ ହେବ । ତାପରେ ଟିକେ ଭଲ ଅବସ୍ଥାକୁ ଆସିଲେ ହୁଏତ କିଏ ନେଇପାରେ ।

ଗୋଟିଏ ରବିବାରେ ସତକୁ ସତ ସେ ମାସରେ ଦରମା ପାଇ ସାଇକେଲ ମରାମତି କରିବାରେ କିଛି ଟଙ୍କା ଖର୍ଚ୍ଚ କରିଦେଲେ ନରେଶ ବାବୁ । ତାପରେ ଗ୍ରାହକ ଅନ୍ୱେଷଣରେ ରହିଲେ । ଗ୍ରାହକ ଶେଷକୁ ମିଳିଗଲା । ଦୁଇଶ ଟଙ୍କାରେ ନିଜର ବହୁ ଦିନର ସାଥୀ ସାଇକେଲଟିକୁ ସାଇରେ ଷୀର ବୁଲେଇ ବିକୁଥିବା ଗଉଡ଼କୁ ଦେଇଦେଲେ ।

ଏହା ଭିତରେ ବଡ଼ବାବୁଙ୍କ ସଙ୍ଗରେ କଥାବାର୍ତ୍ତା କଲେ । ବଡ଼ବାବୁ ନିର୍ଭର ଜବାବ୍ ଦେଲେ ଯେ ମାସକ ମଧ୍ୟରେ ଷ୍ଟେସନ ନିକଟରେ ନୂଆ ତିଆରି ହୋଇଥିବା କ୍ୱାର୍ଟରକୁ ଗୋଟାଏ ମିଳିଯିବ ତାଙ୍କୁ ।

ପ୍ରଥମେ ଯେଉଁଦିନ ଷ୍ଟେସନ ଚାଲି ଚାଲି ଗଲେ ନରେଶବାବୁ, ତାଙ୍କ ଆଖିକୁ ଲୁହ ଚାଲି ଆସିଥିଲା । କିନ୍ତୁ ଆସିଲାବେଳେ ମନ୍ଦାକିନୀଙ୍କ ସମ୍ମୁଖରେ ନିଜର ଦୁର୍ବଳତା ଲୁଚାଇବାକୁ ଯାଇ କହିଲେ, ଓହୋ··· ଏତେ ଦିନେକେ ଖଣ୍ଡିଏ ସାଇକେଲ କବଳରୁ ମୁକ୍ତି ମିଳିଲ । ସାଙ୍ଗ ସାଥୀମାନଙ୍କର କି ଥଟ୍ଟା ଟାପରା ! ସେଗୁଡ଼ିକୁ କି କଷ୍ଟରେ ମୁଁ ହଜମ କରୁଥିଲି ସେକଥା ଘରେ ବସି ତମକୁ କୁଆଡ଼େ ମାଲୁମ ହେବ ? ମନ୍ଦାକିନୀ ରାଗିବା ଠେବେଳେ ହସି ହସି କହିଲେ, ତମକୁ କଣ ସାହା ମିଳିଲା, ମତେ ଭଗବାନ ମୁକ୍ତ ଦେଲେ । ସାଙ୍ଗ ସାଥୀଙ୍କ ଟାପରା ଅପେକ୍ଷା ତମ ଉପେଇଲ କଥା ଗୁଡ଼ାକ ଯେ କି ଯନ୍ତ୍ରଣାଦାୟକ ସେକଥା ମୋ ଛଡ଼ା ଆଉ କିଏ ଅନୁଭବ କରିବ ? ତମେ ନା ତମର ସାଙ୍ଗସାଥୀ ?

ନରେଶ ବାବୁ ଚୁପ୍ ହୋଇ ପାଦରେ ଚପଲ ଗଳାଇ ଚୋରଙ୍କ ଭଳି ବାହାରି ଚାଲି ଆସିଲେ । ମନ୍ଦାକିନୀଙ୍କୁ କେବେ ସେ କଥାରେ ଜିତି ପାରି ନାହାନ୍ତି । ଆଜି ବି ପରାଜିତ ସୈନିକ ଭଳି ରଣଭଙ୍ଗ ଦେଇ ଚାଲି ଆସିଲେ ।

ରାସ୍ତାରେ ତାଙ୍କ ସାମ୍ନାରେ ତାଙ୍କର ସାଇକେଲ ଚଢ଼ି ନନ୍ଦଉଠା ଆଖି ପିଛୁଳାକେ ତାଙ୍କୁ ଟପି ଚାଲିଗଲା । ଚୁଁ ଚିକନା ହୋଇଗଲା ତାଙ୍କ ଚିତ୍ତ । ଗୋଟିଏ ଦିନ ପାଇଁ ଅଫିସରୁ ଫେରିଲା ବେଳେ ମନେ ମନେ ସେ ହିସାବ କରନ୍ତି, ଛତିଶି ଦିନରୁ କେତେ ଦିନ ଗଲା ମନେ ମନେ ଫେଡ଼ି ବସନ୍ତି । ଅବଶେଷରେ ମାସଟିଏ ବିତିଲା । ନରେଶବାବୁଙ୍କ ସ୍ୱପ୍ନକୁ ସଫଳ କରି କ୍ୱାଟରଟିଏ ମିଳିଲା । ପରିବାରର ସବୁ ସଦସ୍ୟଙ୍କ ମନରେ ଆନନ୍ଦର ତରଙ୍ଗ ଖେଳିଗଲା । ମିଳିମିଶି ନୂଆ ଘର ସଜାଇବାରେ ସମସ୍ତେ ଲାଗି ପଡ଼ିଲେ । ଶନିବାର ଦିନ ଆସି ନୂଆ ଘରେ ରହିଲେ । ନରେଶବାବୁ ନିଶ୍ଚିନ୍ତ ମନରେ ଭାବିଲେ ଆସନ୍ତା କାଲି ରବିବାର । ଭଲ ଭାବେ ବିଶ୍ରାମ ନେଇ ସୋମବାର ଦିନ ଧୀରେ ସୁସ୍ଥେ ଅଫିସ ଯିବେ । ଘରଟା ତ ଷ୍ଟେସନକୁ ଲାଗିଛି, ଏତେ ଆଉ ଧାଁଧପଡ଼ ହେବାକୁ ପଡ଼ିବ ନାହିଁ ।

ରବିବାର ଦିନ ରାତିରେ ନରେଶବାବୁ କି ଶାନ୍ତିରେ ନିଦ୍ରା ଗଲେ । ଜୀବନରେ ବୋଧହୁଏ ଏପରି ସନ୍ତୋଷଜନକ ଭାବେ କେବେ ସେ ଶୋଇ ନାହାନ୍ତି ! ସବୁଦିନ ଅପେକ୍ଷା—ଆଜି ସେ ଟିକେ ବିଳମ୍ବରେ ବିଛଣା ଛାଡ଼ିଲେ । ଆଜି ତରତର ହେବାର କିଛି କାରଣ ନାହିଁ । ଉଠିପଡ଼ି ନିତ୍ୟକର୍ମ ସାରି ଦେଇ ସେ ଚିନ୍ତା କଲେ, ବର୍ତ୍ତମାନ କ'ଣ ସେ କରିବେ ? ହାତରେ ଅନେକ ସମୟ ଅଛି । ତାଙ୍କର ଜଣେ ସାଥୀ କର୍ମଚାରୀଙ୍କ କଥା ତାଙ୍କର ହଠାତ୍ ମନେ ପଡ଼ିଲା । ନରେଶବାବୁଙ୍କର ଅନେକ ଦିନରୁ ପେଟ ବେମାରି, ସେଥିପାଇଁ ମଝିରେ ମଝିରେ ଅସୁସ୍ଥ ହୋଇ ପଡ଼ନ୍ତି । ତେଣୁ ସେ ତାଙ୍କୁ ଆସନ କରିବା ନିମନ୍ତେ ଅନେକ ଦିନରୁ ପରାମର୍ଶ ଦେଇ ଆସିଛନ୍ତି । କିନ୍ତୁ ସମୟ ଅଭାବରୁ କେବେ ସେ ତାଙ୍କ ଉପଦେଶକୁ କାର୍ଯ୍ୟରେ ଲଗାଇ ପାରି ନାହାନ୍ତି । ଆଜି ଅନେକ ସମୟ ତାଙ୍କ ହାତରେ ଅଛି ।

ସେ ଏକମୁହାଁ ହୋଇ ଘର ପାଖରେ ଥିବା ଖୋଲା ଜାଗାକୁ ଚାଲିଗଲେ । ମୁକ୍ତ ବାୟୁ ଏବଂ କଅଁଳ ସୂର୍ଯ୍ୟ କିରଣରେ ଆସନ କଲେ । ଘରକୁ ପ୍ରବେଶ କଲାବେଳେ ଅଚାନକ ତାଙ୍କ ମନକୁ ଆସିଲା, କେବେଠାରୁ ସେ ଠାକୁର ପୂଜା ଆଉ କରିନାହାନ୍ତି । କର୍ମମୟ ଜୀବନରେ ଈଶ୍ୱରଙ୍କୁ ଡାକିବା ନିମନ୍ତେ କେବେ ସେ ଟିକିଏ ସମୟ ବାଣ୍ଟି ପାରିନାହାନ୍ତି । ଆଜି ତାଙ୍କର ମନେ ହେଲା, ଠାକୁର ବୋଧହୁଏ ଏତେ ଦିନକେ ତାଙ୍କ ପ୍ରତି ଦୟା କଲେ ! ତାଙ୍କୁ ପାଖକୁ ହାତଠାରି ଡାକିଲେ । ସେ ଭାଗ୍ୟବାନ । ଆଜି ସେ ମନଧ୍ୟାନ ଦେଇ ଠାକୁର ପୂଜା କରିବେ । ତାଙ୍କ ପାଖରେ କୃତଜ୍ଞତା ଜଣାଇବେ । ସେ

ସିଧା ଠାକୁର ଘରେ ପ୍ରବେଶ କଲେ । ଘର ଭିତର ସମ୍ପୂର୍ଣ୍ଣ ନିର୍ଜନ । ପିଲମାନେ ସକାଳୁ ସ୍କୁଲ କଲେଜ ଚାଲିଗଲେଣି । ମନ୍ଦାକିନୀ ରୋଷେଇ ଘରେ କାର୍ଯ୍ୟବ୍ୟସ୍ତ ।

ନରେଶବାବୁ ଠାକୁର ଘରେ ପ୍ରବେଶ କରି କବାଟ ଅଉଜେଇ ଦେଲେ । କେତେ ସମୟ ସେ ଠାକୁରଙ୍କୁ ଅନାଇ ବସିଛନ୍ତି ସେକଥା ସେ ନିଜେ ଜାଣନ୍ତି ନାହିଁ । ମନ୍ଦାକିନୀ ଆସି ଚେତେଇ ଦେଇଗଲେ । "ତମର କ'ଣ ଆଜି ଆଉ ଅଫିସ ଯିବା ନାହିଁକି ? ଖାଇବ ଆସ ।" ନରେଶବାବୁ ଧ୍ୟାନଭଙ୍ଗ ହେଲ । ସତେ ତ, କେତେଟା ବାଜିବ ବର୍ତ୍ତମାନ ? ବଡ ପୁଅ ତା' ପରୀକ୍ଷା ବୋଲି ଘଣ୍ଟାଟା ତାଙ୍କର ନେଇ ଯାଇଛି । ହଁ ନେଉ, ଆଜି ତ ଆଉ ଷ୍ଟେସନକୁ ସାଇକେଲ ପେଲି ଯିବାର ଭୟ ନାହିଁ । ଗାଡ଼ି ହୁଇସିଲ ଦେଲେ ଘରୁ ସେ ବାହାରିବେ ।

ଆସନ ଉପରେ ବସିପଡ଼ି ନରେଶବାବୁ ଆଜି ନିଶ୍ଚିନ୍ତରେ ଖାଇବସିଲେ । ଅନେକ ଦିନରୁ ସେ ଗଣ୍ଡେ ଭଲ କରି ଖାଇ ପାରିନାହାନ୍ତି । ସବୁଦିନେ ନାକରେ କାନରେ ଗୁଞ୍ଜି ଲି ଭଳି କ'ଣ ଗଣ୍ଡାଏ ତରତରରେ ଗିଳି ଦେଇ ସେ ବାହାରି ଆସନ୍ତି । ଆଜି ସେ ଧୀରେ ସୁସ୍ଥେ ବସି ତରକାରିର ସ୍ୱାଦ ଭଲ କରି ଅନୁଭବ କରି ଶାନ୍ତିରେ ଗଣ୍ଡେ ଖାଇବେ । ଖିଆ ସରିଲା, ଏଥର ନରେଶବାବୁ ସାର୍ଟ ପିନ୍ଧି ଚପଲ ଗଳାଇ ବାହାରକୁ ବାହାରି ଆସିଲେ । ଘର ଦୁଆରମୁହଁ ମୋଡ ବୁଲିଗଲେ ପ୍ଲାଟଫର୍ମଟା ପୂରା ଦେଖାଯାଏ ।

ଏ କ'ଣ ! ଗାଡ଼ି ସେ ଚାଲିବାକୁ ଆରମ୍ଭ କରିଦେଲଣି ! ହତଚକିତ ହୋଇ ନରେଶବାବୁ ପ୍ରାଣ୍‌ ଦୌଡ଼ିବାକୁ ଆରମ୍ଭ କରିଦେଲେ । ପ୍ଲାଟଫର୍ମରେ ପହଞ୍ଚିଲା ବେଳକୁ ଗାଡ଼ି ପ୍ଲାଟଫର୍ମ ଛାଡ଼ି ସାରିଥିଲା । ନରେଶବାବୁଙ୍କ ଆଖିରୁ ଯେମିତି ନିଆଁଜୁଳା ଫୋକ ବାହାରି ପଡ଼ିଲା । ମୁଣ୍ଡ ବୁଲେଇ ଦେଲାଭଳି ଲାଗିଲା । ସକାଳ ପ୍ରହରରୁ ଯେତେ ଶାନ୍ତି ଏବଂ ସନ୍ତୋଷ ସେ ପାଇଥିଲେ ବୋଲି ସେ ଭାବୁଥିଲେ ସବୁ ଯେମିତି ପାଣି ଫୋଟକା ଭଳି କେଉଁଆଡ଼େ ମିଳାଇଗଲା । ଟ୍ରେନ ନ ଧରିପାରିବାର ଗ୍ଲାନିରେ ସେ ଜର୍ଜରିତ ହୋଇ ଉଠିଲେ । କ'ଣ କରିବେ କିଛି ସ୍ଥିର କରି ପାରିଲେ ନାହିଁ । ହଠାତ୍ ତାଙ୍କ ମନକୁ ଆସିଲି । ଏହା ପରେ ପଲାସା ପାସେଞ୍ଜର ଅଛି, ଯେଉଁଥିରେ ସେ ବେଳ୍ ଯାଆନ୍ତି । କିଛିଟା ସାନ୍ତ୍ୱନାରେ ତାଙ୍କ ମନ ପୁଣି ସତେଜ ହୋଇ ଉଠିଲା । ଗୋଟାଏ ସିମେଣ୍ଟ ବେଞ୍ଚ ଉପରେ ବସିପଡ଼ି ସେ ଗାଡ଼ି ଅପେକ୍ଷାରେ ରହିଲେ । ପାଞ୍ଚମିନିଟ ଗଲା, ଦଶମିନିଟ ଗଲା, ଅଧ ଘଣ୍ଟାଏ ବିତିଗଲା, ଗାଡ଼ି କାହିଁ ?? ପୁନର୍ବାର ବିଚଳିତ ହୋଇ ଉଠିଲେ ସେ । ଗାଡ଼ି କ'ଣ ଆଜି କେଉଁଠାରେ କିଛି ଅଘଟଣ ଯୋଗୁଁ ଅଟକି ରହିଛି । ତାଙ୍କ ଆଡ଼କୁ ଆସୁଥିବା ଗୋଟିଏ କୁଲିକୁ ଅଧୈର୍ଯ୍ୟ ହୋଇ ପ୍ରଶ୍ନକଲେ ସେ, ଆଜି କ'ଣ ଆଉ ପଲାସା ପାସେଞ୍ଜର ଆସିବ ନାହିଁ ?

କୁଲି କହିଲା, ଆଜ୍ଞା ଏଇତ ଗଲା ପଲାସା ଗାଡ଼ି ।

—ପଲାସା ଗାଡ଼ି ? ଏ ଯେଉଁଟା ଅଧଘଣ୍ଟାଏ ହେଲା ଗୁଲିଗଲା !! ନରେଶବାବୁ ମୁଣ୍ଡରେ ହାତଦେଇ ନଥ୍‌କନା ପୁଣି ସେଇ ସିମେଣ୍ଟ ବେଞ୍ଚଟା ଉପରେ ବସି ପଡ଼ିଲେ । ଷ୍ଟେସନ ଘର ପାଖ ବୋଲ କ ନଷ୍ଟ ଲୁରେ ସେ ଘାଦ କାଢ଼ି ବାହାରି ଆସିଥିଲେ, ଅଥଚ ପ୍ରଥମ ଦିନରେ ହିଁ ଗାଡ଼ି ଫେଲ୍ । କ'ଣ କହିବେ ବଡ଼ ବାବୁ !! କେମିତି ଘରକୁ ଫେରି ମହାଜନଙ୍କ ଆଗରେ ମୁହଁ ଦେଖାଇବେ ? ପିଲମାନେ ତାଙ୍କ ଦୂରବସ୍ଥା ଲକ୍ଷ୍ୟ କରି କ'ଣ ଭାବବେ ମନରେ !! ତାଙ୍କ ମନରେ ଖାଲି ପ୍ରଶ୍ନ ପରେ ପ୍ରଶ୍ନ ଖୁନ୍ଦି ହୋଇଗଲା । ଅସହାୟ ହୋଇ ପ୍ରାୟ କାନ୍ଦି ପକାଇଲେ ନରେଶବାବୁ ।

କେତେ ସେ ସ୍ୱପ୍ନ ଦେଖୁଥିଲେ ! ଘରଟା ଷ୍ଟେସନକୁ ଲାଗି ହେଲେ ଜୀବନରେ କେବେ ସେ ଆଉ ବିଳମ୍ବରେ ଅଫିସରେ ପହଞ୍ଚିବେ ନାହିଁ । ବଡ଼ବାବୁ ଖୁସୀ ହେବେ । ତାଙ୍କର ପ୍ରମୋସନ ହେବ । ଦରମା ବଢ଼ିବ । ପିଲମାନେ ଠିକେ ଭଲରେ ଚଳିବେ । ସାଇକେଲ ବିକଦେଇ ମାସକଯାକ ଗୁଲି ଗୁଲି ଆସି କଷ୍ଟରେ ଷ୍ଟେସନରେ ନ ପହଞ୍ଚୁଥିଲେ ସେ !! ସେ ବରଂ ଭଲ ଥିଲା । ଯଦିଓ ବିଳମ୍ବ ହେଉଥିଲା, କିନ୍ତୁ ଦୁଇଟାଯାକ ଗାଡ଼ି କେବେ ସେ ଫେଲ୍ ହୋଇନଥିଲେ ।

ନରେଶ ବାବୁ ଭାବିଲେ ମଣିଷର ପ୍ରକୃତି ଏମିତି । କଷ୍ଟକର କାମଟିକୁ ସେ ମନ ପ୍ରାଣ ଦେଇ କରେ । ସଫଳ ହୁଏ ମଧ୍ୟ । କିନ୍ତୁ ଅତି ସହଜ କାମଟିକୁ ହେୟ ଜ୍ଞାନ କରି ଅତି ସୁରୁଖୁରୁରେ ସେ କରିଦେବ ବୋଲି ଭାବି ଶେଷକୁ ଠିକ୍ ଭୁଲରେ ନପାରି ବିଫଳ ହୁଏ । ଦୁଃଖ ଭୋଗେ, ଅନୁତାପ କରେ । ଅଜି ସେଇଭଳି ଅବସ୍ଥା ହୋଇଛି ତାଙ୍କର । ଟ୍ରେନ୍ ହୁଇସିଲ ଶୁଣି ଟ୍ରେନରେ ସେ ଚଢ଼ିସିବେ ବୋଲି ଭାବି ସେ ଟ୍ରେନ୍ ଫେଲ୍ ହୋଇ ଏଠି ଖୁଣ୍ଟାଟା ଭଳି ବସି ରହିଛନ୍ତି । ନା—ଆଉ ବସି ରହିବା ଲାଭନାହିଁ କିଛି । ଘରକୁ ସେ ଫେରିଯିବେ । ମହାଜନଙ୍କୁ କହିବେ, ତମେ ଯୋଉ ଅଣିଥିବା ସାଇକେଲଟି ପଦରି ହେଲେ ମଧ୍ୟ ମୋର ଉପକାରୀ ବନ୍ଧୁଟିଏ ଥିଲା । ତାକୁ ହରାଇ ମୁଁ ଜୀବନରେ ହେଲିଛି ହରାଇ ବସିଛି ଆଜି ।

# ସମୟର ଫାଶ

ଶଚୀକାନ୍ତ ବାବୁଙ୍କର ଆର୍ଥିକ ସଂଗତି ସେପରି ସ୍ୱଚ୍ଛଳ ନଥିଲା । ମାସକୁ ମାସ ଯତ୍‌କିଞ୍ଚିତ ମିଳୁଥିଲା କେବଳ ପେନ୍‌ସନ୍ ବାବଦକୁ । ସେଥିକରେ ତାଙ୍କର ବେଶ୍ ଚଳି ଯାଉଥିଲା । ସରଳ ଓ ନିରାଡ଼ମ୍ବର ଭାବେ ଜୀବନ ବିତାଇ ନେବା ତାଙ୍କର ଅଭ୍ୟାସଗତ ହୋଇ ଯାଇଥିଲା । ପରିବାର ତାଙ୍କର ସେପରି ବଡ଼ ନ ଥିଲା । ସେ ଓ ତାଙ୍କର ଗୋଟିଏ ବୋଲି ଝିଅ । ଝିଅ ଏମ୍. ଏ. ଶେଷ ବର୍ଷରେ ପଢ଼େ । ନିଜ ଝିଅକୁ ଉଚ୍ଚଶିକ୍ଷିତା କରିବାରେ ତାଙ୍କର କୌଣସି ଅବଦାନ ନଥିଲା କହିଲେ ଚଳେ । ଝିଅ ଆରମ୍ଭରୁ ଖୁବ୍ ଭଲ ପଢ଼ୁଥିଲା । ଆଜି ପର୍ଯ୍ୟନ୍ତ ବୃତ୍ତି ପାଇ ଆସୁଛି । ତାର ପଢ଼ା ଖର୍ଚ୍ଚ ସେ ନିଜର ବୃତ୍ତି ଟଙ୍କାରେ ତୁଲଉଛି । ତେଣୁ ତାର ପଢ଼ା ଖର୍ଚ୍ଚ ତୁଲାଇବା ପାଇଁ ଆର୍ଥିକ ସଂକଟ କେବେ ଅନୁଭବ କରିନାହାନ୍ତି ଶଚୀକାନ୍ତ ବାବୁ । ଝିଅ ଚପଳା ଅତି ଶ୍ରେଷ୍ଠ ବୟସରୁ ମାତୃହୀନା । ଚପଳା ଜନ୍ମର ଦୁଇବର୍ଷ ପରେ ଶଚୀକାନ୍ତଙ୍କର ପତ୍ନୀ-ବିୟୋଗ ଘଟିଥିଲା । ଏହା ପରେ ଆଉ ଦ୍ୱିତୀୟ ବିବାହ କରି ନଥିଲେ ସେ । ଚପଳାର ସେ ଥିଲେ ଏକାଧାରରେ ବାପା ଓ ମା' ।

ସେହି କାରଣରୁ ଚପଳା ଅତି ମାତ୍ରାରେ ତାଙ୍କ ନିକଟରେ ସଂକୋଚହୀନା । ତାର ଜୀବନର ସମସ୍ତ ଟିକିନିଖି ଘଟଣାରେ ସେ ସଂଶ୍ଳିଷ୍ଟ କରି ପକାଏ ଶଚୀକାନ୍ତବାବୁଙ୍କୁ । ଯାହା ଯେଉଁଠି ତାକୁ ନେଇ ଘଟେ ସବୁ ସେ ତାଙ୍କ ଆଗରେ ବଖାଣି ବସେ ।

ଚପଳା ଅସାମାନ୍ୟ ନ ହେଲେ ମଧ୍ୟ ସୁନ୍ଦରୀ । ତେଣୁ ଝିଅକୁ ନେଇ ଆଦୌ ଚିନ୍ତା ସେ କରି ନାହାନ୍ତି । ତେବେ ବେଳେ ବେଳେ ସେ ବ୍ୟସ୍ତ ହୋଇପଡ଼ନ୍ତି ଚପଳାର ବିବାହ କଥା ନେଇ । ତେବେ ଆଜିକାଲିକା ଯୁଗରେ ଝିଅ ଯେତେ ସୁନ୍ଦରୀ ଏବଂ ଶିକ୍ଷିତା ହୋଇ-ଥିଲେ ମଧ୍ୟ ଯୌତୁକ ହେଲା ବିବାହ ଦେବାରେ ଏକମାତ୍ର ମାପକାଠି । ଝିଅକୁ ଗୁଡ଼ାଏ ଟଙ୍କା ଯୌତୁକ ଦେବା କ୍ଷମତା ନଥିବା ହେତୁ, କୌଣସି ବଡ଼ ଘରେ ବନ୍ଧୁ ବାନ୍ଧିବାର ପ୍ରଶ୍ନ ଆଦୌ ଉଠୁ ନଥିଲା । ଖବର କାଗଜରୁ ଏବଂ ସହରର ଆଖପାଖରେ ଘଟୁଥିବା ଅନେକ ପ୍ରେମ ବିବାହ ବିଷୟ ଶୁଣିଥିଲେ ଶଚୀକାନ୍ତ ବାବୁ । ତେଣୁ ତାଙ୍କ ହୃଦୟର କେଉଁ ନିଭୃତ କୋଣରେ ଏକ କ୍ଷୀଣ ଆଶା ଅଙ୍କୁରିତ ହେଉଥିଲା ଯଦି ତାଙ୍କ ଝିଅକୁ ସେମିତି କିଏ ପ୍ରେମ ବିବାହ କରି ବସେ !!

ଶଚୀକାନ୍ତ ବାବୁଙ୍କ ଜୀବନସାରା ଅଧସ୍ତନ ସରକାରୀ କର୍ମଚାରୀ କିରାଣୀରୂପେ କଟିଛି । ଅତି ସାଧାରଣ ମଣିଷଟିଏ ହେଲେ ମଧ୍ୟ ଏକ ଅସାଧାରଣ ପ୍ରତିଭାର ସେ ଅଧିକାରୀ

ଥିଲେ । ଜ୍ୟୋତିଷ ଶାସ୍ତ୍ରରେ ସେ ଥିଲେ ଖୁବ୍ ପାରଦର୍ଶୀ । ଏହି ଅସାଧାରଣ ବିଦ୍ୟା ତାଙ୍କୁ ସହର ଭିତରେ ବେଶ୍ ପରିଚିତ କରାଇ ପାରିଥିଲା । ସବୁଠାରୁ ବଡ଼ କଥା ହେଲା, ଜ୍ୟୋତିଷ ଗଣନା ପାଇଁ ସେ କାହାଠାରୁ ପଇସା ନେଉ ନ ଥିଲେ । ଏହି ଉଦାରତା ଏବଂ ନିର୍ଲୋଭ ସ୍ୱଭାବ ତାଙ୍କୁ ଆଣି ଦେଇଥିଲା ଯଥେଷ୍ଟ ସୁନାମ । ରାତି ପାହିଲେ ଅନେକ ଲୋକ ଜାତକ ଧରି ତାଙ୍କ ପାଖରେ ଆସି ପହଞ୍ଚି ଯାଉଥିଲେ । ସମସ୍ତଙ୍କ ଭାଗ୍ୟରେଖାକୁ ସେ ନିର୍ଭୁଲ ଭାବେ ଗଣନା କରି ଭବିଷ୍ୟତ କଥା କହୁଥିଲେ । ସ୍ତ୍ରୀ ମରିଯିବା ପରେ ତାଙ୍କର ଜ୍ୟୋତିଷ ଶାସ୍ତ୍ର ପ୍ରତି ହଠାତ୍ କାହିଁକି ଆକର୍ଷଣ ବଢ଼ି ଯାଇଥିଲା ଏବଂ ଘର ଚର୍ଚ୍ଚା ସବୁ-ଠାରୁ ପ୍ରିୟ କାର୍ଯ୍ୟ ହୋଇ ପଡ଼ିଥିଲା । ଲୋକେ ପଇସା ଯାଚିଲେ ସେ ମନା କରୁଥିଲେ । କାଳେ କେହି ଭାବିବ ପେଟ ପୋଷିବା ନିମନ୍ତେ ସେ ମିଛ ସତ ଲୋକଙ୍କୁ କହୁଛନ୍ତି-ଏଇ ଡର ଶଶିକାନ୍ତ ବାବୁଙ୍କ ମନରେ ବସାବାନ୍ଧି ରହିଥାଏ ।

ଶଶିକାନ୍ତ ବାବୁଙ୍କର ସଂପର୍କୀୟ କେହି ମୂଳରୁ ପ୍ରାୟ ତାଙ୍କ ଘରକୁ ଆସୁ ନଥିଲେ କାରଣ ସେ ଥିଲେ ଜଣେ ନିମ୍ନ ବେତନ-ଭୋଗୀ କର୍ମଚାରୀ । ସହରରେ ତାଙ୍କର ଅନେକ ପରିଚିତ ବ୍ୟକ୍ତି ଥିଲେ ମଧ୍ୟ ଖାସ୍ ବନ୍ଧୁ ରୂପେ ଗ୍ରହଣ କରୁଥିଲେ କେବଳ ସଂକର୍ଷଣ ବାବୁଙ୍କୁ । ସେ କୌଣସି ଏକ ବିଦେଶୀ ଫାର୍ମର ମ୍ୟାନେଜିଂ ଡାଇରେକ୍ଟର୍ । ତାଙ୍କର ଦୁଇ ପୁଅ ଏବଂ ସ୍ତ୍ରୀଙ୍କୁ ନେଇ ଏକ ସୁଖୀ ପରିବାର । ବଡ ଗୃହକର୍ତ୍ତା ସାଙ୍ଗକୁ ମୋଟା ଦରମା । ଠିକ ଶଶିକାନ୍ତ ବାବୁଙ୍କ ବିପରୀତ । ତଥାପି ଦୁହିଁଙ୍କର ବନ୍ଧୁତ୍ୱରେ ବଡ଼ ସାନର କୌଣସି ପ୍ରଭେଦ ନଥିଲା । ଶଙ୍କର୍ଷଣ ବାବୁଙ୍କ ପରିବାରରେ ସବୁଠାରୁ ପ୍ରିୟ ଥିଲେ ଶଶିକାନ୍ତ ।

କେବେ ଗୋଟିଏ ବିଷୟରେ ଦୁହିଁଙ୍କର ମନର ମେଳ ନଥିଲା । ଶଙ୍କର୍ଷଣ ବାବୁ ଜାତକ ଦେଖାଇବାର ବିରୋଧି ଥିଲେ । ସେ ଭାବୁଥିଲେ ଯାହା ଘଟିବାର ଥିବ ଘଟିବ । ସେ ସବୁ ପୂର୍ବରୁ ଜାଣି ମଣିଷ ଆତଙ୍କିତ ହେବ କାହିଁକି ? ତଥାପି ତାଙ୍କର ଶଶିକାନ୍ତ ବାବୁଙ୍କର ଜାତକ ଗଣନା ଉପରେ ଖୁବ ଆସ୍ଥା ଥିଲା ।

ଶଶିକାନ୍ତ ବାବୁଙ୍କର ବ୍ୟକ୍ତିତ୍ୱରେ ଅଉ ଏକ ବିଶିଷ୍ଟ ଗୁଣ, ଯେତେ ଅଭାବରେ ପଡ଼ିଲେ ମଧ୍ୟ ସେ ସାହାଯ୍ୟ ନିମନ୍ତେ କେବେ କାହାର ଦ୍ୱାରସ୍ଥ ହେଉ ନଥିଲେ । ଉପାସ ରହିଲେ ମଧ୍ୟଂ କାହା ପାଖରୁ ଧାର କରିବାକୁ କେବେ ସେ ଚିନ୍ତା ମଧ୍ୟ କରୁ ନଥିଲେ । ଏପରିକି ତାଙ୍କ ବନ୍ଧୁ ଶଙ୍କର୍ଷଣ ବାବୁଙ୍କ ପାଖରୁ ମଧ୍ୟ ନୁହେଁ । ନିଜର ଆତ୍ମ ସମ୍ମାନ ଉପରେ ତାଙ୍କର ଗଭୀର ବିଶ୍ୱାସ ଥିଲା । ବିଶ୍ୱାସ ଥିଲା ମଧ୍ୟ ନିଜ ଝିଅ ଉପରେ । ଚପଳା ଯଦିଓ ଶିକ୍ଷିତା ତଥାପି ଉଗ୍ର ଆଧୁନିକତାର ସୀମାରେଖାରୁ ବହୁତ ଦୂରରେ ରହୁଥିଲା । ନିଜ ବାପାଙ୍କ ଭଳି ଆତ୍ମ ସମ୍ମାନ ପ୍ରତି ଖୁବ୍ ସଚେତନ ଥିଲା ଚପଳା ।

ହଠାତ୍ ଦିନେ ଶଶିକାନ୍ତ ବାବୁଙ୍କର ଅବଚେତନ ମନର କ୍ଷୀଣ ଆଶାରେ ଇନ୍ଧନ ଦେଇ କରି ଚପଳା ଜଣାଇଲା ତାର ମନ କଥା । ସେ 'ପ୍ରେମ ବିବାହ' କରିବାକୁ

ଦୁହେଁ । ଶଶିକାନ୍ତ ବାବୁ ଖୁସି ହୋଇଥିଲେ ଓ ମନେ ମନେ ଈଶ୍ୱରଙ୍କ ପାଖରେ କୃତଜ୍ଞତା ଜଣାଉଥିଲେ । ନିଜର ଭାବୀ ଜାମାତା ସଂପର୍କରେ ସବୁକିଛି ଜାଣିବା ଲାଗି ସେ ବେଶ ଆଗ୍ରହୀ ଥିଲେ ହେଁ ସେ ତାହା ଚପଳା ଆଗରେ ପ୍ରକାଶ କରି ନଥିଲେ । ଚପଳାର ନିର୍ବାଚନ କଦାପି ଭୁଲ ହେବ ନାହିଁ ଏହା ତାଙ୍କର ମନରେ ଦୃଢ଼ ବିଶ୍ୱାସ । ତାଙ୍କର ହୃଦୟରେ ଯେଉଁ କ୍ଷୀଣ ଅନ୍ଧାର ପ୍ରଜାପତି କ୍ଷଣ କ୍ଷଣ ହୋଇ ଅନେକ ଦିନରୁ କଳା ଆସୁଥିଲା ତେବେ ଚନ୍ଦ୍ରାର ଅନ୍ଧାରକୁ ଦୂର କରି ପାରୁ ନଥିଲା, ତାହା ହେଉଛି ହଠାତ୍ ଏକ ଉଦୀୟମାନ ସୂର୍ଯ୍ୟରେ ପରିଣତ ହୋଇଗଲା । ଶଶିକାନ୍ତ ବାବୁଙ୍କର ମନର ଆକାଶ ଝଲମଲ ହୋଇ ଉଠିଲା ସେଇ ଆଲୋକ ରଶ୍ମିରେ ।

ଚପଳା ସ୍ପଷ୍ଟ ଭାବେ ତାର ମତାମତ ଜଣାଇ ଥିଲା । କାରଣ ଶଶିକାନ୍ତ ବାବୁଙ୍କ ନିକଟରେ ତାର କୌଣସି ପ୍ରକାରେ ସଂକୋଚ ନଥିଲା । ପିଲା ଦିନରୁ ତାର ସମସ୍ତ ଅଳି ଅର୍ଦ୍ଦଳି କେବଳ ଶଶିକାନ୍ତ ବାବୁଙ୍କ ନିକଟରେ ଥିଲା ସୀମିତ । ବିନା ପ୍ରତିବାଦରେ ସେ ତା'ର ସମସ୍ତ ଆପତ୍ତି ଅଭିଯୋଗ ଶୁଣୁଥିଲେ ଏବଂ ନିଜର ଧାରୁ ପର୍ଯ୍ୟନ୍ତ ଝିଅର ଅଭିଳାଷ ପୂର୍ତ୍ତି କରିବାକୁ ଚେଷ୍ଟା କରୁଥିଲେ । ତଥାପି ଏକଥା ପ୍ରକାଶ କଲାବେଳେ ନାରୀ-ସୁଲଭ ଲଜ୍ୟାରେ ସେ ତଳକୁ ମୁହଁ ପୋତି ନଖରେ ଗାର କାଟିବା ଆରମ୍ଭ କରିଦେଲା ।

ଶଶିକାନ୍ତ କହିଲେ, 'ତୋ ଉପରେ ମୋର ଗଭୀର ଆସ୍ଥା ଅଛି ମା ! ତୋର ଜୀବନ ସାଥୀର ନିର୍ବାଚନ ତୁ ଉତ୍ତମ ରୂପେ କରିପାରିବୁ ଏ ବିଶ୍ୱାସ ମଧ୍ୟ ମୋର ଅଛି । କିନ୍ତୁ ସେହି ପିଲାର ବାପା ମାଆ ଓ ପରିବାରବର୍ଗଙ୍କ ମତାମତ ନଜାଣି ତୁ ଏ ପଦକ୍ଷେପ ନେବା ଠିକ୍ ହେବ ନାହିଁ ।'

—ଆପଣ ସେ ବିଷୟରେ ନିଶ୍ଚିନ୍ତ ରୁହନ୍ତୁ ବାବା ! ତାଙ୍କ ବାପା ମଧ୍ୟ ଆପଣଙ୍କ ପରି ସନ୍ତାନବତ୍ସଳ ଓ ଉଦାର । ସେ ମଧ୍ୟ ତାଙ୍କ ଠାରୁ ଅନୁମତି ନେଇ ସାରିଛନ୍ତି । ଖୁବ୍ ନିକଟରେ ଆମେ ଦୁହେଁ ଆପଣ ଓ ଆପଣଙ୍କ ଭାବୀ ସମ୍ବନ୍ଧିଙ୍କୁ ପରସ୍ପରକୁ ପରିଚୟ କରାଇ ଦେଇ ଚମକାଇ ଦେବୁ । ଆମେ ତାଙ୍କ ଘରକୁ ଯିବା । ସେଇଠାରେ ହିଁ ଅଭିନୀତ ହେବ ଆପଣ ଦୁହିଁଙ୍କୁ ଅବାକ୍ କରି ଦେଲା ଭଳି ନାଟକରେ ଶେଷ ଦୃଶ୍ୟ ।

ଶଶିକାନ୍ତ ବାବୁ ଆତ୍ମ ସନ୍ତୋଷରେ ହସି ଉଠିଲେ । କିନ୍ତୁ ପରମୂହୂର୍ତ୍ତରେ ସେ ଆତ୍ମଗ୍ଲାନିରେ ମ୍ରିୟମାନ ହୋଇ ପଡିଲେ, ଯେତେବେଳେ ଚପଳା ପ୍ରସ୍ତାବ କଲା କିଛି ଏକ ଉପହାର ଦେଇ ଭାବୀ ଜାମାତାଙ୍କୁ ସ୍ୱୀକାର କରିବା ନିମନ୍ତେ । ନିଜର ଖର୍ଚ୍ଚ ତୁଲେଇବା ପରେ ଏକ ପଇସା ବି ତାଙ୍କର ସଞ୍ଚୟ ହୋଇ ରହେନା । ଉପହାର କହିଲେ ଚପଳା ମତରେ ଏକ ସୁନା ମୁଦି ଯାହାର ମୂଲ୍ୟ ଅତି କମ୍ ରେ ହଜାରେ ଟଙ୍କା । କିନ୍ତୁ ଏହା ସେ ନ ଦେଇ ପାରିଲେ ତ ନିଜ ଝିଅ ଆଗରେ ଛୋଟ ଲୋକ ହୋଇ ପଡ଼ିବେ । ତାଙ୍କର ଅପାରଗତା ଚିରଦିନ ଲାଗି ତାଙ୍କୁ ଝିଅ ପାଖରେ ସଂକୁଚିତ କରି ରଖିବ । ସେ

ନିଜ ଝିଅକୁ କେବଳ ସାଧାରଣ ବ୍ୟବହାର୍ଯ୍ୟ ଜିନିଷ ବ୍ୟତୀତ ଅଧିକା କିଛି ଦେଇ ପାରି ନାହାନ୍ତି ଆଜି ପର୍ଯ୍ୟନ୍ତ । ତାର ଏହି ପ୍ରଥମ ଏବଂ ଶେଷ ଦାବୀ ପୂରଣ ନ କଲେ ତାଙ୍କୁ ଚପଳା ଭାବିବ କଣ ? ତାକୁ କେବଳ ଜନ୍ମ ଦେବା ବ୍ୟତୀତ ଆଉ କଣ ଦେଇଛନ୍ତି ସେ ? ହଜାରେ ଟଙ୍କା !! କେଉଁଠୁ ସେ ଆଣିବେ ? କି ଉପାୟରେ, କାହାଠାରୁ ? ପୁଣି କେଉଁ ପନ୍ଥାରେ ? ବର୍ତ୍ତମାନ ତ ରୋଜଗାର ପନ୍ଥା କିଛି ନାହିଁ, ପୂର୍ବରୁ ଅଭ୍ୟାସ ନ ଥିବାରୁ କେବେ ସେ କାହାକୁ ସାହାଯ୍ୟ ମାଗି ପାରିବେ ନାହିଁ । କାହା ଠାରୁ ବି ଜାତକ ଗଣନା କରି ଟଙ୍କା ଉପାର୍ଜନ କରି ପାରିବେ ନାହିଁ । ତେବେ ସେ ଏତେ ଟଙ୍କା ଆଣିବେ କୁଆଡ଼ୁ ?

କେବଳ ମନେ ପଡ଼ିଲା ଶଙ୍କର୍ଷଣ ବାବୁଙ୍କ ମୁହଁ । ଦୁନିଆରେ ଶଙ୍କର୍ଷଣ ବାବୁଙ୍କ ବ୍ୟତୀତ ଅନ୍ତରଙ୍ଗ ତାଙ୍କର ଆଉ କେହି ନ ଥିଲେ । ସେ ଦିନ ସାରା ରାତି ଅନିଦ୍ରା ରହି ଶଚୀକାନ୍ତ ଖାଲି ଭାବିବାକୁ ଲାଗିଲେ କିପରି ଟଙ୍କା ଆସିବ କିନ୍ତୁ ତାଙ୍କ ଆତ୍ମ ସମ୍ମାନରେ ଆଞ୍ଚ ଆସିବ ନାହିଁ ।

ତା'ପର ଦିନ ସଂଧ୍ୟାରେ ସେ ଯନ୍ତ୍ରଚାଳିତ ଗତିରେ ପହଞ୍ଚିଲେ ଯାଇ ଶଙ୍କର୍ଷଣ ବାବୁଙ୍କ ଘରେ । ସେ ଚିନ୍ତାଗ୍ରସ୍ତ ଓ ଗମ୍ଭୀର । ତେବେ ସେ କଣ କହିବେ କିଛି ଠିକ୍ କରି ପାରି ନଥିଲେ । ହଠାତ୍ ତାଙ୍କର ଦୃଷ୍ଟି ପଡ଼ିଲା ବାରଣ୍ଡାରେ ବସିଥିବା ଶଙ୍କର୍ଷଣ ବାବୁଙ୍କ ବଡ଼ପୁଅ ଉପରେ । ତାକୁ ଲକ୍ଷ୍ୟ କରି ଗୋଟିଏ ଉଦ୍ଭଟ ଭାବନା ତାଙ୍କ ମନରେ ପ୍ରବେଶ କଲା । ନିଜେ ସେ ଜାଣି ପାରିଲେ ନାହିଁ କାହିଁକି ଏପରି ଏକ ଅକଳ୍ପନୀୟ ସଙ୍ଗଠସ୍ଥାନ କଥା ତାଙ୍କ ମନକୁ ଆସିଗଲା । ଶଙ୍କର୍ଷଣ ବାବୁ ସବୁ ଦିନ ଭଳି ହସି ହସି ତାଙ୍କୁ ସମ୍ବର୍ଦ୍ଧନା ଜଣାଇଲେ । ବିବେକକୁ ନିଜର ଶାସନରେ ରଖି ହଠାତ୍ ଶଚୀକାନ୍ତ ବାବୁ କହିଲେ, "ତମ ବଡ଼ ପୁଅର ଜାତକଟା ଟିକେ ମତେ ଦେଖାଅ" । 'ତାହାତ ଆପଣ ଆଗରୁ ଦେଖି ସାରିଛନ୍ତି'—ଶଙ୍କର୍ଷଣ ବାବୁ ଆଶ୍ଚର୍ଯ୍ୟ ହୋଇ ପଚାରିଲେ । "ତଥାପି ମୋର ସନ୍ଦେହ......" ଶଚୀକାନ୍ତ ବାବୁ ବାକ୍ୟ ସମ୍ପୂର୍ଣ୍ଣ କରିପାରିଲେ ନାହିଁ । ଏକ ଅପରାଧ ବୋଧ ତାଙ୍କ କଣ୍ଠ ରୁଦ୍ଧ କରି ଦେଲା । ଶଙ୍କର୍ଷଣ ବାବୁ ଆତଙ୍କିତ ହୋଇ ଉଠିଲେ । କିଛି ସମୟ ପରେ ଜାତକ ନେଇ ଆସି ଶଚୀକାନ୍ତ ବାବୁଙ୍କ ହାତରେ ଦେଲେ । ଶଚୀକାନ୍ତ ବାବୁ ଘର ଦରଜା ଭିତରପଟୁ ବନ୍ଦ କରି କିଛି ସମୟ ଗଣନା କରିବାର ଅଭିନୟ କଲେ । ତାପରେ ଶଂକର୍ଷଣ ବାବୁଙ୍କୁ ସ୍ତବ୍ଧ କରିଦେଇ କହିଲେ "ଆପଣଙ୍କର ବଡ଼ ପୁଅର ଜାତକ ଦେଖି ମୁଁ ଜାଣିପାରୁଛି ସେ ଅଦୂର ଭବିଷ୍ୟତରେ ଆପଣ ସମସ୍ତଙ୍କ ଜୀବନର ଆକାଶରେ ଏକ ଅଶୁଭ ଧୂମକେତୁ ରୂପେ ପରିବର୍ତ୍ତିତ ହୋଇ ପଡ଼ିବ । ଏପରିକି ଆପଣଙ୍କ ମଧ୍ୟରୁ କାହାର ମୃତ୍ୟୁର କାରଣ ମଧ୍ୟ ସେ ହୋଇପାରେ । ଏପରି ଏକ ଅଶୁଭ ଗ୍ରହ ତା ରାଶି ଉପର ଦେଇ ଗତି କରିବ ଯେ ଯାହା ଫଳରେ ତାର ଚରିତ୍ରର ଧାରା

ସମ୍ପୂର୍ଣ୍ଣ ରୂପେ ବଦଳି ଯିବ ।'' ଏତେ ସବୁ କହିବା ଭିତରେ ଜାତକର ଗୋଟିଏ ଅକ୍ଷର ସୁଦ୍ଧା ସେ ପଢ଼ି ନ ଥିଲେ । ପ୍ରତାରଣା ଓ ଛଳନାର ଘନ କୁହେଳୀ ତାଙ୍କ ଆଖିଡ଼ୋଳାକୁ ଘେରି ରହିଥିଲା । ମନର ବୁଢ଼ିଆଣି ଜାଲ ମଧ୍ୟରୁ ଗୋଟେଇ ସାଉଁଟି ଏଇ ଦୁଇପଦ କଥା କହିଲା ପରେ ଭୀଷଣ ମାନସିକ ଦ୍ୱନ୍ଦ୍ୱରେ ଦୋଳି ଖେଳୁଥିଲେ ସେ ।

ଶଙ୍କର୍ଷଣ ବାବୁ ଭୟ ଓ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଲେ । ପ୍ରଶ୍ନ କଲେ, ''ଏହାର ପ୍ରତିକାର ?''

''ଅଛି, ଏକ ଗ୍ରହ ପୂଜା କରିବାକୁ ପଡ଼ିବ । ସେ ଆନୁସଙ୍ଗିକ ଖର୍ଚ୍ଚ ତୁଲେଇବା ନିମନ୍ତେ ଅନ୍ୟୁନ ଏକ ହଜାର ଟଙ୍କା ଦରକାର ।'' ଶଚୀକାନ୍ତ ଜାତକଟି ଟେବୁଲ୍ ଉପରେ ଥୋଇ କହିଲେ ।

''ହଜାରେ କଣ ଲକ୍ଷେ ଟଙ୍କା ମଧ୍ୟ ମୁଁ ଦେବାକୁ ପ୍ରସ୍ତୁତ । କେବେ ଏ କାମ ସରିବ ?'' ଉତ୍କଣ୍ଠିତ ହୋଇ ପ୍ରଶ୍ନ କଲେ ଶଙ୍କର୍ଷଣ ବାବୁ ।

''ବ୍ୟସ୍ତ ହୁଅନା, ମୁଁ କାଲି ଭିତରେ ହିଁ ଏ କାର୍ଯ୍ୟ ସମାପ୍ତ କରିବି । ପଅର ଦିନ ପ୍ରଭାତ ବେଳକୁ ଅଶୁଭ ମେଘ କଟିଯିବ । ଆକାଶ ପରିଚ୍ଛନ୍ନ ହୋଇ ଉଠିବ । କିନ୍ତୁ ସାବଧାନ ଏକଥା ଯେପରି ଦ୍ୱିତୀୟ ବ୍ୟକ୍ତି କେହି ନ ଜାଣନ୍ତି ।'' ଶଚୀକାନ୍ତ ବାବୁ ହଜାରେ ଟଙ୍କା ନେଇ ଫେରି ଆସିଲେ । ରାସ୍ତାରେ ବଣିଆ ଦୋକାନରୁ କିଣି ଆଣିଲେ ଏକ ସୁନ୍ଦର ମୁଦି । ତାଙ୍କର ମନର ଭାରସାମ୍ୟ ଠିକ ନଥିଲା । ସେ ଜାଣି ପାରୁ ନଥିଲେ ଏପରି ଏକ ଜଘନ୍ୟ ଅପରାଧ ନିମନ୍ତେ ଭବିଷ୍ୟତରେ କେଉଁ ଦଣ୍ଡରେ ଭଗବାନ ତାଙ୍କୁ ଦଣ୍ଡିତ କରାଇବେ !

ପରଦିନ ଚପଳା କଲେଜରୁ ଫେରୁ ଫେରୁ ଶଚୀବାବୁଙ୍କୁ ନିମନ୍ତ୍ରଣ ଜଣାଇଲା ଭାବୀ ପତି ଘରକୁ ଯିବା ନିମନ୍ତେ । ସେ ଦିନ କଲେଜରୁ ଶୀଘ୍ର ଫେରି ଆସିଲା ଚପଳା । ସାମାନ୍ୟ ବେଶଭୂଷା ହୋଇ ରିକ୍ସା ଖଣ୍ଡିକରେ ଶଚୀକାନ୍ତଙ୍କୁ ନେଇ ବାହାରିଲା । ରିକ୍ସା ଯାଇ ଯେଉଁ ଘରର ଫାଟକ ଆଗରେ ରହିଲା ତାହାକୁ ହଠାତ୍ ଚିହ୍ନିପାରି ଶଚୀକାନ୍ତ ବାବୁ ଯେପରି ଆକାଶରୁ ଖସି ପଡ଼ିଲେ । ଚପଳାକୁ ଚାହିଁଲେ ସେ ମୁରୁକି ମୁରୁକି ହସୁଛି । କିନ୍ତୁ ଏ କ'ଣ ? ଶଙ୍କର୍ଷଣ ବାବୁଙ୍କ ଘର ଭିତରେ କାହିଁକି ଏତେ ଲୋକଙ୍କର ଭିଡ଼ । ଘର ମଧ୍ୟରୁ ଶୁଣା ଯାଉଛି କ୍ରନ୍ଦନର ରୋଳ । ଶଚୀକାନ୍ତ ବାବୁ କିଂ କର୍ତ୍ତବ୍ୟ ବିମୂଢ଼ ହୋଇଗଲେ । ତାଙ୍କ ମନକୁ ପାପ ଛୁଇଁଲା । ଧୀରେ ଧୀରେ ଚପଳା ସହିତ ଘର ନିକଟକୁ ଆଗେଇ ଗଲେ ସେ । ବାରଣ୍ଡା ଉପରକୁ ଉଠିବା କ୍ଷଣି କ୍ରନ୍ଦନରତ ଶଙ୍କର୍ଷଣ ବାବୁଙ୍କ ଦୃଷ୍ଟି ତାଙ୍କ ଉପରେ ପଡ଼ିଲା । ତାଙ୍କୁ ଦେଖି ଶଙ୍କର୍ଷଣ ବାବୁଙ୍କ କ୍ରୋଧ ଦ୍ୱିଗୁଣିତ ହେଲା । ଶଚୀକାନ୍ତ ବାବୁ ସମ୍ପୂର୍ଣ୍ଣ ନିର୍ବାକ୍ ଓ ତଟସ୍ଥ ଭାବେ ଠିଆ ହୋଇଥାନ୍ତି । ଘଟଣା କ'ଣ

ପଚ୍ଚରିବା ପାଇଁ ତାଙ୍କର ସାହସ ହେଉ ନଥାଏ । ଉଭିଂଭୂମି ଅଡ଼କୁ ଅଙ୍ଗୁଳି ଦେଖାଇଲେ ଶଙ୍କର୍ଷଣ ବାବୁ । ରୁମ ଭିତରକୁ ସମୀମାଇ ଚମକି ପଡ଼ିଲି ଚପଳା । ଏ କାହାର ଶବ ? କିଛି ସମୟ ପରେ ବୁଝି ପାରିଲି ସମର ଆଉ ଇହ ଜଗତରେ ନାହିଁ । କଟାଗଲା ଗଛ ପରି ସମରର ପ୍ରାଣହୀନ ଶରୀର ଉପରେ ସେ କଟିଗୃଢ଼ ହୋଇ ପଡ଼ିଗଲା ।

ଶଙ୍କର୍ଷଣ ବାବୁ ଶଚୀକାନ୍ତ ବାବୁଙ୍କ ହାତକୁ ଏକ ଗ୍ରେଟ ଚିଠି ବଢ଼ାଇ ଦେଲେ । ଶଚୀକାନ୍ତ ଊର୍ଦ୍ଧ୍ୱ ଶ୍ୱାସରେ ପଢ଼ିଲେ, ''ବାପା ! ମୁଁ ମୋ ନିଜ ଇଚ୍ଛାରେ ଆତ୍ମହତ୍ୟା କରୁଛି । ଏଥିପାଇଁ କାହାକୁ ଦାୟୀ କରନ୍ତୁନି ମୋ ଅନ୍ତେ ଆମ ପରିବାର ହସ ଖୁସିରେ ଉଜ୍ଜ୍ୱଳ ହେଉ ଏହାହିଁ ମୋର ଅନ୍ତିମ କାମନା । ଚପଳାକୁ କହିବେ ମୋତେ ଭୁଲି ବୁଝିବନି ।'' -ସମର । ଚପଳା !! ବିଦ୍ୟୁତ୍ ଆଘାତ ଲଗିଲା ପରି ଚମକି ପଡ଼ିଲେ ଶଚୀକାନ୍ତ ବାବୁ ।

ଶଚୀକାନ୍ତ ଓ ଶଙ୍କର୍ଷଣ ସବୁକଥା ବୁଝି ପାରିଥିଲେ । ଉଭୟଙ୍କ ପୁଅ ଝିଅ ସେମାନଙ୍କ ପାଇଁ ଆଜିଯାଏଁ ଯେଉଁ ଉତ୍କଣ୍ଠା ରଖିଥିଲେ ସେଇ ମୁହୂର୍ତ୍ତରେ ତା'ର ପରିସମାପ୍ତି ଘଟିଥିଲା ।

ଶଚୀକାନ୍ତ ମୂକ ପାଲଟି ଯାଇଥିଲେ । ଶଙ୍କର୍ଷଣ କହିଲେ, ବୋଧହୁଏ ଆମ କଥା ସମର ବାହାରେ ଲୁଚି ରହି ଶୁଣିଥିଲା । ଆପଣଙ୍କ ନିର୍ଭୁଲ ଗଣନା ଉପରେ ତାର ମଧ୍ୟ ଦୃଢ଼ ବିଶ୍ୱାସ ଥିଲା । ତେଣୁ ସେ ଅନ୍ୟ କାହାର ମୃତ୍ୟୁର କାରଣ ହେବା ପୂର୍ବରୁ ନିଜେ ମୃତ୍ୟୁକୁ ଆଲିଙ୍ଗନ କରିନେଲା ।

ଶଚୀକାନ୍ତ କଣ କହିବେ କଣ କରିବେ କିଛି ସ୍ଥିର କରିପାରୁ ନଥିଲେ । ଜୀବନରେ ପ୍ରଥମ ଥର ପଦେ ମିଛ କହିବାର ପରିଣାମ ଯେ ଏଭଳି ଭୟାବହ ହୋଇ ଉଠିବ ତାହା ସେ କଳ୍ପନା କରିପାରି ନଥିଲେ । କେବଳ ଶଙ୍କର୍ଷଣ ବାବୁଙ୍କୁ ଭୟଭୀତ କରାଇ ଟଙ୍କା ନେଇ ଆସିବା ବ୍ୟତୀତ ଅନ୍ୟ କୌଣସି ଉଦ୍ଦେଶ୍ୟ ତାଙ୍କର ନଥିଲା । କିନ୍ତୁ କଣ ହେବ ଏହାର ପ୍ରାୟଶ୍ଚିତ ? ପ୍ରକାଶ କରି ଦେବେ କି ପ୍ରକୃତ ସତ୍ୟ ? କିନ୍ତୁ ଆଜିଯାଏ ରହି ଆସିଥିବା ତାଙ୍କର ଆତ୍ମ ସମ୍ମାନ ! ଶଙ୍କର୍ଷଣ ବାବୁଙ୍କ ସହ ବନ୍ଧୁତ୍ୱ !! ଚପଳାର ତାଙ୍କ ପ୍ରତି ଅତୁଟ ବିଶ୍ୱାସ !!! ଏ ସବୁର ପରିଣତି କଣ ହେବ ??

ଗୋଟିଏ ମିଥ । ଦକ୍ଷ ସେ ଯେ ଶଙ୍କର୍ଷଣ ବାବୁଙ୍କ ପରିବାରର କେବଳ ଅପୂରଣୀୟ କ୍ଷତି କରି ନାହାନ୍ତି, ନିଜ ଝିଅକୁ ବିବାହ ପୂର୍ବରୁ ବୈଧବ୍ୟ ଯନ୍ତ୍ରଣା ଭୋଗିବାକୁ ବାଧ୍ୟ କରିଛନ୍ତି । ସମରର ଜୀବନର ମୂଲ୍ୟ ମାତ୍ର ଏକ ହଜାର ଟଙ୍କା ତାଙ୍କ ପକେଟରେ ଏବେ ବି ମୁଦ୍ରା ଆକାରରେ ପଡ଼ି ରହିଛି । ଯେଉଁ ମୁଦ୍ରାକୁ ପିନ୍ଧାଇ ସମରକୁ ଏକ ନୂତନ ଜୀବନର ସନ୍ଧାନ ଦେଇଥାନ୍ତେ, ସେହି ନୂତନ ଜୀବନର ସ୍ୱୀକୃତ ଶେଷକୁ ମୃତ୍ୟୁର ପରୱାନା ହୋଇ ଆସିଛି ।

ଶଙ୍କର୍ଷଣ ବାବୁଙ୍କ ଘରୁ ଶବ ଶୋଭାଯାତ୍ରା ବାହାରିଲା । ଚପଲା କାନ୍ଦି କାନ୍ଦି ପଛରେ ଦଉଡ଼ିବାକୁ ଲାଗିଲା । ସେ ଆଗେଇ ପାରୁ ନଥାନ୍ତି । ତାଙ୍କ ଗୋଡ଼କୁ ପଛରୁ ଯେପରି କିଏ ଟାଣି ଧରୁଥାଏ !

ଚପଲା ଚିତ୍କାର କଲା, "ବାପା, ଡେରି କରନ୍ତୁ ନାହିଁ । ସେ ଚାଲି ଯାଉଛନ୍ତି । ପିନ୍ଧାଇ ଦିଅନ୍ତୁ ତାଙ୍କ ହାତରେ ସେ ମୁଦି । ସେ ଜାଣି ଯାଆନ୍ତୁ ନିଜ ସହିତ ଅନ୍ୟ ଜଣଙ୍କର ଜୀବନ ମଧ୍ୟ ସେ ନେଇ ଯାଉଛନ୍ତି ।"

ଶଶିକାନ୍ତ ଅନୁଭବ କଲେ ଏକ ସଙ୍ଗେ ସେ ଦୁଇଟି ଜୀବନ ନଷ୍ଟ କରି ଦେଇ-ଛନ୍ତି । କାହିଁକି ? ସାରା ଜୀବନ ସେ ସତ୍ୟର ଅନୁସରଣରେ ଚାଲି ଆସିଥିଲେ । ହଠାତ୍ ସେ ବାଟ ଭୁଲି ମିଥ୍ୟାର ଅ.ବର୍ଜନାମୟ ଅନ୍ଧକାର ଗଳି ରାସ୍ତାରେ ପ୍ରବେଶ କଲେ କାହିଁକି ? କେବଳ ପଦେ ମିଥ୍ୟା, ତାର ଦଣ୍ଡ ଏତେ ମର୍ମାନ୍ତିକ ! ଏତେ ଯନ୍ତ୍ରଣା-ଦାୟକ !!

ସମରର ଶବ ଶୋଭାଯାତ୍ରାରେ ସେ ଅଗେଇ ପାରୁ ନଥିଲେ । ସେ ରହିଗଲେ ପଛରେ, ନିଜ ଅପରାଧର ଜଳନ୍ତା ଅଗ୍ନିରେ ଜୀବନ୍ତ ଦଗ୍ଧୀଭୂତ ହେବାକୁ ସାରା ଜୀବନ ।

# ମନ ଅରଣ୍ୟ

ଭୋର ଚାରିଟାରେ ଚନ୍ଦ୍ରଶେଖର ବାବୁଙ୍କର ନିଦ ଭାଙ୍ଗିଗଲା । ଘଣ୍ଟାରେ ଆଲର୍ମ କଣ୍ଟାଟା ଭୀଷଣ ଭାବେ ଚିତ୍କାର କରୁଛି । ହାତ ବଢ଼ାଇ ଆଲର୍ମ ଗୁଡ଼ାକୁ ବନ୍ଦ କରିଦେଲେ ସେ । କେତେ ତାଙ୍କୁ ଅନୁରୋଧ କରିଥିଲେ, ସ୍ଥାନୀୟ ଏମ୍.ଏଲ୍.ଏ.ଙ୍କ ନିକଟକୁ ଯାଇ ତାଙ୍କର କେତେଗୁଡ଼ିଏ ଦାବୀ ଉପସ୍ଥାପନ କରିବା ନିମନ୍ତେ । ଏମ୍. ଏଲ୍. ଏ. ଅଶୋକ ଦାସ ଦିନେ ତାଙ୍କର ଛାତ୍ର ଥିଲା । ସେଇ ଅଧିକାର ସୂତ୍ରରେ ତା ଘରକୁ ଯାଇ କିଛି କହିବେ ସେ । ଅଶୋକ କେବେ କେମିତି ତାଙ୍କୁ ଭେଟିଲେ ସମ୍ମାନ ଦେଖାଏ । ମଝିରେ ଯାଇ ଦେଖିଲେ ହାତକୁ ଓହ୍ଲାଇ ପଡ଼ି ପଦେ ଅଧେ କଥାବାର୍ତ୍ତା ମଧ କରେ । ଚନ୍ଦ୍ରଶେଖର ବାବୁ ନିଜେ ତା ବିରୁଦ୍ଧରେ ଅନେକ କଥା ଶୁଣନ୍ତି ସବୁ ଅଭିଯୋଗ ଭୁଲିଯାଇ ସେଇ ମୁହୂର୍ତ୍ତରେ ଖୁସି ହୋଇଯାଆନ୍ତି । ତାକୁ ଆଶୀର୍ବାଦ କରନ୍ତି । ଜୀବନରେ ଆହୁରି ଉନ୍ନତି କରୁ ବୋଲି ।

କିନ୍ତୁ···ଅଶୋକ ଦାସ ଉନ୍ନତି କରୁବୋଲି ଏଠିକାର କେହି ଚାହାନ୍ତି ନାହିଁ । ଚନ୍ଦ୍ରଶେଖର ବାବୁଙ୍କ ସନ୍ଧ୍ୟାତାରା ହୋଟେଲର ମାଲିକ ବିରଞ୍ଚିବାବୁ ଏବଂ ତାଙ୍କ ହୋଟେଲକୁ ଲାଗି ପାନ ଦୋକାନ କରିଥିବା ସର୍ବେଶ୍ୱର କହିଲେ, ଆଜ୍ଞା । ବହୁଦିନରୁ ଏହି ଜାଗାଟିକୁ ଆମେ ଅଧିକାର କରି ବସିଛୁ ଯେଉଁଟା କି ଆମ ବାପା ଅଜାଙ୍କର ନୁହେଁ । ସରକାରଙ୍କର । କହିଲେ ଆଜ୍ଞା । ଯାହାର ବାପା ମା' ନାହିଁ ତା'ର ବାପ ମା' ଏଇ ସରକାର । ଏଇ ଏମ୍. ଏଲ୍. ଏ., ନହେଲେ ଆମେ ତାଙ୍କୁ କାହିଁକି ଭୋଟ ଦେବୁ ?

ନରହରି ବାବୁ କହିଲେ, ଆଜ୍ଞା ମୁଁ ଜଣେ ସିମେଣ୍ଟ ଡିଲର । ଶୁଣିଲି କଲେଜରେ ନୂଆ ଅଡ଼ିଟୋରିୟମଟିଏ ତିଆରି ହେବ । ଆଜ୍ଞା ତାଙ୍କୁ କହିଲେ ଯେତେ ସିମେଣ୍ଟ ଆବଶ୍ୟକ ସେସବୁ ମୁଁ ସୁବିଧାରେ ଯୋଗାଇ ଦେବି । ତା'ପରେ ଅମୁକ ବାବୁଙ୍କ ଝିଅର କଲେଜରେ ନାମ ଲେଖାଇବା ପାଇଁ ଅସୁବିଧା ଉପୁଜୁଛି ମାର୍କଲିଷ୍ଟ ନେଇ । ଏମ୍. ଏଲ୍. ଏ. ମହାଶୟ ପ୍ରିନ୍‌ସିପାଲଙ୍କ ପାଖକୁ ଲୋକ, କହିଦେଲେ ହୋଇଯିବ । ଆଉଜଣେ ବାବୁଙ୍କଠାରୁ କୁଆଡ଼େ କେବେ ଯାଇ ଅଶୋକ ଦାସ ଧାର କରି ନେଇଥିଲେ ଏକ ହଜାର ଟଙ୍କା, ଏମ୍. ଏଲ୍. ଏ. ହେବାପରେ ସେକଥା ସେ ଭୁଲି ଯାଇଛନ୍ତି । ସେଇଆ ତାଙ୍କୁ ମନେପକାଇ ଦେବାକୁ ହେବ ! ତା'ଛଡ଼ା ଆହୁରି କେତେ ଅଭିଯୋଗ, ସବୁଗୁଡ଼ା ତାଙ୍କର ମନେନାହିଁ । ମନେ-ପକାଇ କରିବାକୁ ହେବ ।

କିନ୍ତୁ ମାଡ଼କଣ୍ଟା ଡଣ୍ଟିରେ ଲଟକି ରହିବା ଘରି ତାଙ୍କୁ ଘେରି ରହିଛି ନିଜର ଅସୁବିଧାଟା । ଭୋର୍ ଚାରିଟାରେ ଉଠି ସେ ଗରମ ଗରମ ଚା' କପେ ଖାଉଥିଲେ ।

ତା'ପରେ ଯାଇ ତାଙ୍କର ନର୍ଜିବ ଦେହ ମନ ସଜବ ହୋଇ ଉଠୁଥିଲା । ଠିକ୍ ଭୋର୍ ଗ୍ରଟା । ଦରଅଉଜା କବାଟ ଅସ୍ତେ ମେଲକର ସେ ଘରେ ପାଦ ଦଅନ୍ତ । ହାର୍ମଣି ହାତରେ ଗରମ ଗ୍ୱ । ଅଖିରେ ଅଖିଏ ନଦ । ତାଙ୍କ ହାତକୁ ଗ୍ୱ' କପ୍ ବଢ଼ାଇଦେଇ ପୁନର୍ବାର ସେ ଶୋଇପଡ଼ନ୍ତ । ଟେବୁଲ ପାଖରେ ବସି ବଡ଼ କପ୍‌ରୁ ଢୋକେ ଗ୍ୱ' ଖାଇ ସେ ସାତଟା ପର୍ଯ୍ୟନ୍ତ ବହି ଲେଖାଲେଖି କରନ୍ତ । ହାର୍ମଣି ସଂସାରରୁ ବଦାୟ୍ ନେଲେ । ଆପେ ଆପେ ବନ୍ଦ ହୋଇଗଲା ତାଙ୍କର ଗ୍ୱ' ଖିଆ ଅଭ୍ୟାସ ।

'କାଲ୍ ଯେଉଁ ପୁଅ ଅଉ ଆପଣାର୍ ଥିଲା ଆଜ ସେହିତ ସେ ଜଣେ ଅପରଚତ ବ୍ୟକ୍ତ । କେତେବେଳେ ତା'ର ସମୟ୍ ନଥାଏ ତାଙ୍କ ସହତ ପଦେ କଥା କହବାକୁ । ବୋହୂଙ୍କର ମଧ୍ୟ ସମୟ୍‌ର ଘୋର ଅଭାବ । ପାଖ କନ୍‌ଭେଣ୍ଟ ସ୍କୁଲ୍‌ରେ ଗ୍ରେଟ ଗ୍ରେଟ ପିଲଙ୍କୁ ଇଂରାଜୀ ଶିକ୍ଷା ଦଅନ୍ତ ସେ । ଶୃଙ୍ଖ । କର୍ତ୍ତବ୍ୟ-ସଚେତନତା, ସମୟାନୁବର୍ତ୍ତିତା ବିଷୟରେ ମଧ୍ୟ ସେ ଉପଦେଶ ଦଅନ୍ତ । ନଜେ କନ୍ତୁ ବଛଣା ଛାଡନ୍ତ ସାତଟାବେଳେ । ନଜର ନତ୍ୟକର୍ମ ସାର ତାଙ୍କୁ ଗ୍ୱ' ଦେଲାବେଳକୁ ଘଣ୍ଟାରେ ବାଜଯାଏ ଆଠଟା କମ୍ବା ସାଢ଼େ ଆଠଟା । ସେ ପର୍ଯ୍ୟନ୍ତ ଚ-ଶେଖର ବାବୁ ମାଟି ପିଣ୍ଡୁ ବାଟି ପର ବସିଥାଅନ୍ତ । ହଲଚଲ ନ ହୋଇ । ଗରମ ଗ୍ୱ' କପେ ତାଙ୍କ ପେଟରେ ପଡ଼ିଲେ ଯାଇ ତାଙ୍କ ହାତଗୋଡ଼ ଚଳପ୍ରଚଳ ହେବାପର ଲାଗେ । ହାର୍ମଣି ମଧ୍ୟ ମୃତ୍ୟୁ ଶଯ୍ୟାରେ ମଧ୍ୟ ବୋହୂର ହାତଧର ଅନୁରୋଧ କର ଯାଇଥିଲେ ସେ ଅଉ ଯାହା ବୁଝୁ ନବୁଝୁ ତାଙ୍କର ଖାଇବା ପିଇବା କଥାଟା ଅନ୍ତତଃ ମନଦେଇ ବୁଝିବା ନମନ୍ତେ । ଦୁଃଖରେ ବଚଳତ ହୋଇ ଶୁଖିଲା ଆଖିକୁ ଲୁଗା କାନରେ ରଗଡ଼ି ରଗଡ଼ି ଲାଲ ପକାଇ ଦେଇଥିଲେ ତାଙ୍କର ପୁତ୍ରବଧୂ । ସେଇ ନାଲରଙ୍ଗ ଆଜ ପର୍ଯ୍ୟନ୍ତ ତାଙ୍କ ଆଖିରେ ଲାଖି ରହଯାଇଛ । ସେ ନାଲ ଆଖିକୁ ଅନାଇ ଦେଲେ ଚନ୍ଦ୍ରଶେଖର ବାବୁଙ୍କର ଅଉ କଥା କହବାକୁ ସାହସ ହୁଏନାହିଁ ।

କାଲ ଯେତେବେଳେ ଏତେ ଲୋକ ଆସି ତାଙ୍କୁ ଅନୁରୋଧ କଲେ ଭୋର ଛଅଟା ସୁଦ୍ଧା ଅଶୋକ ଦାସଙ୍କ ଘରେ ପହଞ୍ଚିବାକୁ ହେବ, କାରଣ ସେ ଛଅଟା ବାଜୁ ବାଜୁ ଘରରୁ ବାହାରଯିବେ, ତାଙ୍କ ମୁଣ୍ଡରେ ଚନ୍ତା ପଶିଗଲା । ଗ୍ୱ' ନ ପିଇଲେ ତାଙ୍କ ଗୋଡ଼ ଚାଲବନ, ସେ ଯାଇ ଛଅଟା ପୂର୍ବରୁ ଅଶୋକ ଦାସ ଘରେ ପହଞ୍ଚିବେ କେମିତ ? ଏକଥା ସେ ସେମାନଙ୍କୁ ଜଣାଇ ଦେଇଥିଲେ । 'ମୁଁ ତୁମମାନଙ୍କର ସବୁ ଅଭଯୋଗ ଅଶୋକ ଦାସ ଆଗରେ କହବା ପାଇଁ ରାଜ, କନ୍ତୁ ମତେ ତୁମମାନଙ୍କ ମଧ୍ୟରୁ କଏ ଜଣେ କପେ ଗରମ ଗ୍ୱ' ଭୋର ପାଞ୍ଚଟା ବେଳେ ଆଣି ଏଠାରେ ପହଞ୍ଚାଇ ଦେଇ ପାରବ କ ?

ସମସ୍ତେ ପରସ୍ପର ମୁହଁ ଚୁହାଁଚୁହିଁ ହୋଇଥିଲେ । ଭୋର ପାଞ୍ଚଟା ବେଳେ ଗ୍ୱ !! ଆମ ଘରେ ସେତେବେଳେ ସମସ୍ତେ ଶୋଇ ଘୁଙ୍ଗୁଡ଼ି ମାରୁଥିବେ । ଆମେ କେଉଁଠୁ

ଆଜ୍ଞା ଆଣିବୁ ଚା ? ଚା' ଦୋକାନ ମଧ୍ୟ ନାହିଁ—ଏତେ ସକାଳୁ ଅଜ୍ଞା କ୍ଷୀର କେଉଁଠୁ ଆସିବ ଯେ ମୁଁ ଆପଣଙ୍କୁ ଚା' ନେଇ ଆଣି ଦେଇପାରିବି ? ତା'ଛଡ଼ା ଚୂଲି ବି ଧରା ହୋଇନଥିବ ।

ଚନ୍ଦ୍ରଶେଖର ବାବୁ ଅତୁଷ୍ଟ ହୋଇ କହିଲେ— ବାଣ୍ ବାଣ୍, ଆଉ କିଛି ଅଧିକା କହିବା ଦରକାର ନାହିଁ । ତମମାନଙ୍କ ପାଇଁ ମୁଁ ଯିବ ଶୋଷର ଧାଞ୍ଚାରୁ ବଞ୍ଚଣା ଛାଡ଼ି, ଅଥଚ ତମେ କେହି ମତେ କପେ ଗରମ ଚା ଆଣି ଦେଇପାରିବ ନାହିଁ ? ନଜେ ଚା' ଦୋକାନ ମଧ୍ୟ ନୁହେଁ ?

ସମସ୍ତେ ହାତ ମଳି ମଳି ଉଠି ଠିଆ ହେଲେ । ଲୋକେ କହିଗଲେ, କିଛି ଖରାପ ଭାବିବେ ନାହିଁ ଆଜ୍ଞା ! ଏ ପାଞ୍ଚଟା ବେଳେ ଚା' ପିଇବା ଅଭ୍ୟାସଟା ଆପଣ ଛାଡ଼ି ଦିଅନ୍ତୁ । ଚନ୍ଦ୍ରଶେଖର ବାବୁ ଆଖି ପୋଛି ଆଣି କହିଲେ, ହୁଁ ହୁଁ···ଛାଡ଼ି ଦେବି ଆଉ କଣ ? ହାରାମଣି ମରିବା ଦିନଠାରୁ ଛାଡ଼ି ଦେଇ ସାରିଛି । ଖାଲି ବିନା ଚା'ରେ ଗୋଡ଼ ହାତ ଚଳପ୍ରଚଳ କରିବାର ଅଭ୍ୟାସଟା କରିଦେଲେ ହେଲା !

ଚନ୍ଦ୍ରଶେଖର ବାବୁ ଇଚ୍ଛା କରି ଚଞ୍ଚଳ ହେଲେ । ନିଜ ଅଧିକାରରେ ଗୋଡ଼ ହାତକୁ ରଖି କବାଟ ଆଉଜାଇ ବନ୍ଦକରି ଗେଟ୍ ବାହାରକୁ ଆସିଲେ । ରାସ୍ତାରେ ଧିରେ ଧିରେ ଚାଲିବାକୁ ଆରମ୍ଭ କରିଦେଲେ । ଅଶୋକ ଦାସକୁ ସେ ଆଜି କମା ଛାଡ଼ିବେନି । ଏମ୍. ଏଲ୍. ଏ. ହୋଇଛି ଲୋକଙ୍କର ସୁବିଧା ବୁଝିବା ପାଇଁ, ସେମାନଙ୍କର ସମସ୍ୟା ଦୂର କରିବା ପାଇଁ । ତା ପରିବର୍ତ୍ତେ ଲୋକଙ୍କ ନାକରେ ଦଉଡ଼ି ଲଗାଇ ହଇରାଣ କରୁଛି ହେ !

ଅଶୋକ ଦାସ ଘର ଭିତରେ ଥିଲା । ଚାକର ପିଲାଟା ବାହାର ବାରଣ୍ଡାରେ ମଟର ସାଇକେଲ ପୋଛୁଥିଲା । କହିଲା, ଆପଣ ଭିତରେ ବସନ୍ତୁ ଅଜ୍ଞା ! ବାବୁଙ୍କୁ ମୁଁ ଡାକି ଦେଉଛି ।

ଚନ୍ଦ୍ରଶେଖର ବାବୁ ଚେୟାର ଉପରେ ବସୁ ବସୁ ଅଶୋକ ଦାସ ଆସିଲା । ତାଙ୍କୁ ଦେଖି ଉଚ୍ଛ୍ୱସିତ ହୋଇ କହିଲା—ସାର୍ ! ଆପଣ ! ଅଶୋକ ଦାସ ତାଙ୍କ ପାଦଛୁଇଁ ପ୍ରଣାମ କଲା, ସ୍ତ୍ରୀ ଉଦ୍ଦେଶ୍ୟରେ କହିଲା ପ୍ରାୟ୍ ଚିତ୍କାର କରି—ଆରେ ସାର୍‌ଙ୍କ ପାଇଁ ଚା ଆଣ । ଆଉ ସାର୍ ! ଆପଣ ହଠାତ୍ ଚାଲିଆସିଲେ, ମୋ ପାଖରେ କ'ଣ କାମଥିଲା । ମୁଁ ଜାଣେ, ମୁଁ ଜାଣେ, ଆପଣ ସ୍ୱାଧୀନତା ସଂଗ୍ରାମୀ ଭତ୍ତା ଏ ପର୍ଯ୍ୟନ୍ତ ପାଇନାହାନ୍ତି । ମୁଁ ଖୁବ୍ ଚେଷ୍ଟା ଚଳେଇଛି ସାର୍ ! ଏହା ଭିତରେ ମିଳିଯିବ ।

—ନା । ଅଶୋକ ! ମୁଁ ଭବିଷ୍ୟତରେ ଭତ୍ତା ପାଇବି ବୋଲି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ନଥିଲି । ତମେ ଜାଣ ମୋ ପୁଅ ଏକ ବିଦେଶୀ ଫାର୍ମରେ ଚାକିରି କରେ । ଗଦାଏ ଟଙ୍କା ଦରମା ଦରମା ପାଏ । ଭତ୍ତା ମୋର ଆଉ ଦରକାର କଣ ? ପୁଅଠାରୁ

ମା' ଗୋଟିଏ ପଇସା ମୁଁ ଆଜଯାଏ ନେଇନାହିଁ । ଟମେ ବସ । ତମକୁ ମୋର ଅନ୍ୟ କଥା କହିବାର ଅଛି । ଚନ୍ଦ୍ରଶେଖର ବାବୁ କିଛି କହିବା ପୂର୍ବରୁ ହାତରେ ଟି କପ୍‌ଟିଏ ଧରି ଗୋଟିଏ ନବବଧୂ ସେ ଘରେ ପ୍ରବେଶ କଲା । ଟି' କପ୍ ଟେବୁଲ୍ ଉପରେ ରଖି ଚନ୍ଦ୍ରଶେଖର୍ ବାବୁଙ୍କ ପାଦତଳେ ମୁଣ୍ଡ ଲଗାଇ ପ୍ରଣାମ କଲା । ଚନ୍ଦ୍ରଶେଖର ତାକୁ ଉଦ୍‌ଗ୍ରୀବ ହୋଇ ଚାହିଁଲେ । ଅଶୋକ ଦାସ କହିଲା, ଆଗ ଟି' ଖାଆନ୍ତୁ ସାର୍ । ପରେ ଆପଣଙ୍କର କଥା କହିବେ ।

—ସାର୍ ଆଉ ତମକୁ କଣ କହିବେ ? କେଉଁଠାରେ କ'ଣ ଗୋଟେ ଅଘଟଣ ଘଟାଇଥିବେ । ଝିଅଟି ଅତି ମୃଦୁ ସ୍ୱରରେ ବାକ୍ୟଟି ଉଚ୍ଚାରଣ କଲା ।

ଚନ୍ଦ୍ରଶେଖର ବାବୁ ପୂର୍ବଥରେ ଯେପରି ଅବାକ୍ ହୋଇଗଲେ ଝିଅଟିର କଥା ଶୁଣି । କହିଲେ, ବସ ମା ! ଛିଡାହୋଇ ରହିଛ କାହିଁକି ? ତମେ କଣ ମତେ ଆଗରୁ ଜାଣିଥିଲ ?

—ହଁ, ଇଏ ସବୁବେଳେ ଆପଣଙ୍କ କଥା କହନ୍ତି ।

ଟି ପର୍ବ ସରିଲା । ଅଶୋକ ଦାସ କହିଲା, ଏଥର କୁହନ୍ତୁ ସାର୍ । ଟି' ଖାଇ-ସାରିବା ପରେ ପରିପୂର୍ଣ୍ଣ ସନ୍ତୋଷରେ ଚନ୍ଦ୍ରଶେଖର ବାବୁଙ୍କର ଦେହମନ ପୂରି ଉଠୁଥିଲା । ଆହା କେତେ କଷ୍ଟରେ ପାଦ ଘୋସାରି ଆସି ଏଠାରେ ପହଞ୍ଚିଛନ୍ତି ସେ । ଚନ୍ଦ୍ର-ଶେଖର ବାବୁ ଝିଅଟିର ମୁହଁକୁ ସସ୍ନେହ ଦୃଷ୍ଟି ପକାଇ ଉଠିଲେ କହିଲେ, ତମେ କୁଆଡ଼େ ବାହାରିଥିଲ ଯାଅ । ମୋର ତମକୁ କିଛି କହିବାର ନାହିଁ । ଏଇବାଟେ ପ୍ରାତଃ ଭ୍ରମଣରେ ଯାଉଥିଲି—ଭାବିଲି ତମମାନଙ୍କୁ ଟିକେ ଦେଖିଯାଏ ।

—ମନ୍ତ୍ରସା । ଚନ୍ଦ୍ରଶେଖର ବୁଲି ଅନେଇଲେ । ପୂର୍ବଥରେ ତାଙ୍କ ପାଦତଳେ ଝିଅଟି ପ୍ରଣାମ କଲା, କହିଲା, ଆପଣ ନବୁଦିନେ ପ୍ରାତଃ ଭ୍ରମଣରେ ଚାଲିବେଲେ ଆମଘରେ ଟି' ପିଇଯିବେ । ଇଏ କହନ୍ତି ଭୋର ଗୃହଟାରେ ମାଉସୀ ଆପଣଙ୍କୁ ଟି' କରି ଦେଉଥିଲେ ।

ଚନ୍ଦ୍ରଶେଖର ବାବୁ ଅବାକ୍ ହୋଇ ଦୁହିଁଙ୍କ ମୁହଁକୁ ଅନେଇଲେ । ଓଠରେ ସେମାନଙ୍କର ଆନ୍ତରିକତାର ହସ ।

ଚନ୍ଦ୍ରଶେଖର ବାବୁ ମଧ୍ୟ ହସିଲେ, କହିଲେ, ଆଚ୍ଛା ଆଚ୍ଛା ନିଶ୍ଚୟ ଆସିବି । ତମ ନାଁ କଣ ମା ?

—କଲ୍ୟାଣୀ ।

—ବାଃ, ବେଶ୍ ସୁନ୍ଦର ନାଁ । ଅଶୋକ ପାଇଁ ତୁମେ କଲ୍ୟାଣମୟୀ ହୁଅ ।

ହସି ହସି ଅଶୋକ ଦାସ ତାଙ୍କୁ ପ୍ରଣାମ କଲା ।

# ଅଦୃଶ୍ୟ ଅମୃତ

କଲେଜ ଛକରେ ଆଜି ଶର୍ମିଷ୍ଠା ସହିତ ଦେଖା ହୋଇପାରିଲା ନାହିଁ । ହୁଏତ ଶର୍ମିଷ୍ଠା ବାପାଙ୍କର ଅସୁସ୍ଥତା ବହୁଗୁଣରେ ବଢ଼ି ଯାଇଥିବ କିମ୍ବା ତା' ବଡ଼ଭାଇ ଘରୁ ନ ବାହାରିବା ପାଇଁ ଧମକ ଦେଇଥିବ । ଶର୍ମିଷ୍ଠାର ପାଠପଢ଼ା ଖର୍ଚ୍ଚ ବହନ କରିବା ନିମନ୍ତେ ଏବେ ସେ ଅସମର୍ଥ । ବାପା ନସପରି ଏକ ବଡ ଅଫିସର କି ବ୍ୟବସାୟୀ ନଥିଲେ । ତେଣୁ ପୁଅ ଝିଅଙ୍କ ଭବିଷ୍ୟତ ବା ବର୍ତ୍ତମାନର ସୁବିଧା ସୁଯୋଗ ଗ୍ରହଣ କରିବା ନିମନ୍ତେ ଯେତିକି ଅର୍ଥନୈତିକ ସ୍ୱଚ୍ଛଳତା ଆବଶ୍ୟକ ତାହା ତାଙ୍କ ନିକଟରେ ନଥିଲା । ଅତଏବ ଶର୍ମିଷ୍ଠାର ଭାଇ ପାଠ ପଢ଼ା ବନ୍ଦ କରିଦେବା ନିମନ୍ତେ ବାରମ୍ବାର ଧମକ ଦେଉଥିଲା, ଅଥଚ ସବୁ ଅର୍ଥନୈତିକ ବିଭ୍ରାଟକୁ ଉପେକ୍ଷା କରି ପ୍ରଚୁର ମଦ ପିଉଥିଲା । ଶର୍ମିଷ୍ଠା ଭାଇର ମଦ୍ୟପାନକୁ ଅପରାଧ ଭାବି ପାରୁନଥିଲା । କାରଣ ଘରର ଯତ୍‌କିଞ୍ଚିତ୍ ଖର୍ଚ୍ଚ ସେ ତୁଲାଉଥିଲା । ରୋଗଗ୍ରସ୍ତ ବାପାଙ୍କୁ କ୍ଷୀର, ଛେନା ବା ଫଳ ଯୋଗାଇ ପାରୁନଥିଲେ ବି ମିଶ୍ରି, ଲେମ୍ବୁ ଏବଂ ଶାଗର ଖର୍ଚ୍ଚ ବହନ କରୁଥିଲା । ବାପାଙ୍କର ସ୍ୱଳ୍ପ ପେନ୍‌ସନ ଟଙ୍କାରେ ଅନ୍ୟାନ୍ୟ ଖର୍ଚ୍ଚ ସହିତ ଶର୍ମିଷ୍ଠାର ପାଠପଢ଼ା ଖର୍ଚ୍ଚ ମଧ୍ୟ ସାମିଲ ଥିଲା । ତଥାପି ନିଅଣ୍ଟିଆ ସଂସାରରେ ଶର୍ମିଷ୍ଠାର ପାଠପଢ଼ା ଏକ ଭଙ୍ଗା ଟୋକେଇରେ ବଡ଼ ପଥରର ବୋଝପରି ଥିଲା ।

ଅଂଶୁମାନ ଭାବିଲା ଏଠାରେ ଆଉ ସମୟ ନଷ୍ଟ କରି ଲାଭ ନାହିଁ । ବସ ସମୟ ନିକଟ ହୋଇ ଆସୁଛି । ତାକୁ ରାତି ଆଠଟା ପୂର୍ବରୁ ଯେପରି ହେଉ ଶର୍ମିଷ୍ଠା ସଙ୍ଗରେ ସାକ୍ଷାତ କରିବାକୁ ହେବ । ନଚେତ ଆସନ୍ତା କାଲି ସକାଳେ ଯେତେବେଳେ ତା ଘରର ବନ୍ଦ ଦରଜାରେ ତାଲା ଝୁଲୁଥିବା ତା' ନଜରରେ ପଡ଼ିବ ତାକୁ ସେ ଭାବିବ କିଣ ? କିନ୍ତୁ ଅଂଶୁମାନ ଦ୍ୱନ୍ଦ୍ୱରେ ପଡ଼ିଲା । ଶର୍ମିଷ୍ଠା ବାରମ୍ବାର ସାବଧାନ କରେଇ ଦେଇଛି କଲେଜ-ଛକ ବ୍ୟତୀତ ଯେପରି ଅନ୍ୟଠାରେ ତା ସହିତ ସାକ୍ଷାତ୍ ନକରେ । ଚତୁର୍ଦ୍ଦିଗରେ କେହି ନା କେହି ତା ଭାଇର ଦୂତ ତା' ଉପରେ କଡ଼ା ନଜର ରଖିଛନ୍ତି । ସାମାନ୍ୟ କଥାରେ ଏପଟ ସେପଟ ହେଲେ ଅଂଶୁମାନର ଜୀବନ ପ୍ରତି ବିପଦ ଆସିବାର ସମ୍ଭାବନା ଅଛି । ଏପରି ଏକ ନିକରବନ୍ଦୀରେ ଥିବା ରାଜକନ୍ୟା ସନ୍ତୁଷ୍ଟିତା'ର କୌଣସି ପରିଚୟ ସମ୍ଭବ ହେଲା ସେ ମଧ୍ୟ ଏକ ଅବିଶ୍ୱାସ୍ୟ କାହାଣୀ, ଭାଇ ଯାହାର କଂସ, ପିତା ଉଗ୍ରସେନ ।

ପରିଚୟର ସୂତ୍ରଧର ଥିଲା ମଦ୍ୟପ ରତିକାନ୍ତ, ଶର୍ମିଷ୍ଠାର ଭାଇ । ମଦ୍ୟ ପାନକରି ରାସ୍ତା ଉପରେ ନିହାତି ଅଶ୍ଲୀଳ ଭାବରେ ଗୋଟିଏ ରିକ୍ସାବାଲା ସଙ୍ଗେ ପାଟିଗୋଳ କରି

ଅଚାନକ ରିକ୍ସାବାଲାଠାରୁ ଶକ୍ତ ଧକ୍କା ଖାଇ ରତିକାନ୍ତ ରାସ୍ତାକଡ଼ ବନ୍ତାଖଣ୍ଡରେ ଛିଟି-ହୋଇ ତଳେ ପଡ଼ିଯାଇଥିଲା । ପଡ଼ୋଶୀମାନେ କେବଳ ଜଳଜଳ କରି ଚାହିଁ ରହିଥିଲେ । ରିକ୍ସାବାଲା ଖାରଦର୍ପରେ ରିକ୍ସା ନେଇ ସେ ସ୍ଥାନରୁ ଚାଲିଯାଇଥିଲା । ମାନବିକତା ଦୃଷ୍ଟିରୁ ଯଦିଓ ରକ୍ତାକ୍ତ ରତିକାନ୍ତ ପ୍ରତି ପଡ଼ୋଶୀମାନଙ୍କର ସହାନୁଭୂତିରେ ହୃଦୟ ଛଳ ଛଳ ହୋଇ ଉଠୁଥିଲା ଅନ୍ତରରେ ସେମାନଙ୍କ ପ୍ରତି ତାର ଅଶ୍ଳୀଳ ଆଚରଣ ଯୋଗୁଁ ଏକ ତୀବ୍ର ଘୃଣା ସେମାନଙ୍କର ପାଦ-ଆଗକୁ ଟାଣିନେଇ ପାରୁ ନଥିଲା । ଅତଏବ ଏ ଅଭାବନୀୟ ଘୃଣାର ଯବନିକା ପଡ଼ିଲା ପରେ ଯେ ଯାହାର ଘରକୁ ଫେରିଯାଇ କବାଟ ବନ୍ଦ କରିଦେଇଥିଲେ ।

ଅଂଶୁମାନ ବୋଧହୁଏ ଶୋଇ ପଡ଼ିଥିଲା । ଆଲାର୍ମ ଶବ୍ଦରେ ତାର ନିଦ ଭାଙ୍ଗିଗଲା । ଆଲାର୍ମ ଶବ୍ଦ ବନ୍ଦ ହୋଇଯିବା ପରେ ଘଣ୍ଟା ଦେଖି ସେ ଝରକା ଖୋଲିବା ପରେ ରତିକାନ୍ତକୁ ଲକ୍ଷ୍ୟ କରିଥିଲା । ହୁଏତ ସେ ଏ ଦୃଶ୍ୟକୁ ଏଡ଼ାଇ ଯାଇଥାଆନ୍ତା ଯଦି ଚେତାଶୂନ୍ୟ ରତିକାନ୍ତ ନିକଟରେ ସେଇ ଝିଅଟିକୁ ଦେଖି ନ ଥାଆନ୍ତା । ଝିଅଟି ନିତାନ୍ତ ଅସହାୟ ଭାବରେ ରତିକାନ୍ତକୁ ଉଠାଇବାକୁ ଯାଇ ଅସଫଳ ହେଉଥିଲା । ବାରମ୍ବାର ତା ମୁହଁରେ ପାଣି ଛିଞ୍ଚି ଅନୁଚ୍ଚ କଣ୍ଠରେ "ଭାଇ ଭାଇ" ବୋଲି ବ୍ୟସ୍ତ ବିବ୍ରତ ହୋଇ ତାକୁ ହଲାଇ ପକାଉଥିଲା । ରତିକାନ୍ତ ଗୁଣୁଗୁଣୁ ହୋଇ ଅଶ୍ରାବ୍ୟ ଭାଷାରେ କାହାକୁ ଗାଳି ଦେଉଥିଲା । ଅଂଶୁମାନ ପାଦରେ ଚପଲ ଲୋଚି ଦେଇ ମୁହୂର୍ତ୍ତିରେ ରତିକାନ୍ତ ନିକଟରେ ପହଞ୍ଚି ଯାଇଥିଲା । ସବୁ ଶୁଣି ବହୁ କଷ୍ଟରେ ରତିକାନ୍ତକୁ ଘରକୁ ନେଇ ତା ଖଟରେ ଶୁଆଇ ଦେଇଥିଲା । ଫେରି ଆସିଲା ବେଳକୁ ପଛକୁ ଚାହିଁ ଝିଅଟିର ଅସହାୟ ସଜଳ ଚକ୍ଷୁ ଦୁଇଟିକୁ ଲକ୍ଷ୍ୟ କରି ସେ ବୁଝିପାରିଥିଲା ଭୋର ପାଞ୍ଚଟା ବେଳେ ଆହତ ଭାଇର ସାମାନ୍ୟତମ ଚିକିତ୍ସାର ବ୍ୟବସ୍ଥା କରିବା ତା' ପକ୍ଷରେ ଅସମ୍ଭବ । ଅଗତ୍ୟା ତାକୁ ସାନ୍ତ୍ୱନା ଦେଇ ଅଂଶୁମାନ ହସପିଟାଲ ଯାଇ ଡାକ୍ତରଙ୍କୁ ଡାକି ଆଣିଥିଲା ।

ପ୍ରାୟ ପନ୍ଦରଦିନ ପରେ ରତିକାନ୍ତ ଚାଲିବାକୁ ସକ୍ଷମ ହୋଇ ପାରିଥିଲା । ପନ୍ଦର ଦିନ ମଧ୍ୟରେ ଛୋଟ ଛୋଟ ଅତି ଆବଶ୍ୟକୀୟ କଥାବାର୍ତ୍ତା ଭିତରେ ତାର ପରିଚୟ ହୋଇଥିଲା ଶର୍ମିଷ୍ଠା ସହିତ । ସେଇ ରୋଗଶଯ୍ୟାରେ ଶୋଇ ଶୋଇ ମଧ୍ୟ ରତିକାନ୍ତ କଡ଼ା ନଜର ରଖିଥିଲା ସେ ଦୁଇଜଣଙ୍କ ଉପରେ । ଯେଉଁଦିନ ରତିକାନ୍ତ ଖଟ ଛାଡ଼ି ସିଧା ହୋଇ ଛିଡ଼ାହେଲା ସେଇ ଦିନହିଁ ଜ୍ୱଳନ୍ତ ଚକ୍ଷୁରେ ଏବଂ କର୍କଶ କଣ୍ଠରେ ଆଉ ତାଙ୍କ ଘରର ଦରଜା ନ ମାଡ଼ିବା ନିମନ୍ତେ ତାକୁ ସତର୍କ କରାଇ ଦେଇଥିଲା । ଅଂଶୁମାନ ଭଳି ମେଧାବୀ, ଭଦ୍ର, ଚରିତ୍ରବାନ ବ୍ୟକ୍ତିକୁ, ଯିଏ କି ଜୀବନକୁ ଅନ୍ୟ ଦୃଷ୍ଟିକୋଣ ନେଇ ବିଚାର କରେ, ତାକୁ ଏ ଧମକ ପ୍ରଭାବିତ କରି ପାରିନଥିଲା । ରତିକାନ୍ତ ଭଳି ଜଣେ ଲୋକଠାରୁ ଏହା ବ୍ୟତୀତ ଅନ୍ୟ କିଛି ଆଶା କରାଯିବା ବୋକାମୀ ଭାବି ସ୍ମିତ ହାସ୍ୟରେ ସେ ଏ ଘଟଣାକୁ ମନରୁ ପୋଛି ପକାଇଥିଲା ।

ଅଂଶୁମାନ ଘରର ଠିକ୍ ପାଖକୁ ଲାଗିଥିଲା ଶର୍ମିଷ୍ଠାର ଘର । ତା’ ଘର ଆଡ଼କୁ ଏକ ଝରକା ମଧ୍ୟ ଥିଲା । ଶର୍ମିଷ୍ଠା ଘର ଅତିକ୍ରମ କରି ଆସିଲାବେଳେ ଅତି ସନ୍ତର୍ପଣରେ ତା’ ଘରର ଚତୁର୍ଦ୍ଦିଗମାନରେ ଦୃଷ୍ଟି ପହଁରେଇ ଆସିଲା ଅଂଶୁମାନ । ସୁଯୋଗବଶତଃ ଯଦି ଶର୍ମିଷ୍ଠା ନଜରରେ ପଡ଼ିଯାଏ ! ଅଂଶୁମାନ ହତାଶ ହେଲା । ଶର୍ମିଷ୍ଠାର ଛାଇ ସୁଦ୍ଧା ସେ ଦେଖିବାକୁ ପାଇଲା ନାହିଁ । ତାଲା ଖୋଲି ଘରେ ପ୍ରବେଶ କରି ଅଂଶୁମାନ ବ୍ୟାଗ ସଜାଡ଼ିବାରେ ଲାଗିଗଲା । ପ୍ରାୟ ପନ୍ଦର ମିନିଟ୍ ପରେ ଅଂଶୁମାନ କବାଟରେ ତାଲା ଦେଇ ଲମ୍ବା ଲମ୍ବା ପାଦ ପକାଇ ରାସ୍ତାରେ ଚାଲିବାକୁ ଆରମ୍ଭ କରିଦେଲା । ରାସ୍ତାରେ ଚାଲିଲାବେଳେ ସେ କେବଳ ନିଜକୁ ଦେଖେ ।

ଅଂଶୁମାନ ସେଇ ନିମ୍ନକୁ ଅନେଇଥିବା ଅବସ୍ଥାରେ ଆଉ ଦୁଇଟି ପାଦ ତା’ ସମ୍ମୁଖରେ ଦେଖି ଛିଡ଼ା ହୋଇ ଦୃଷ୍ଟି ଉତ୍ତୋଳନ କଲା । ରକ୍ତାକ୍ତ ଚକ୍ଷୁରେ ତା’ ଗତିରୋଧ କରି ଛିଡ଼ା ହୋଇଛି ରତିକାନ୍ତ । ଅଂଶୁମାନ ସହ ଦୃଷ୍ଟି ବିନିମୟ ହେବାମାତ୍ରେ ସେ ପ୍ରଶ୍ନକଲା, କୁଆଡେ ଚାଲିଲ ? ଏ ପ୍ରଶ୍ନର ଉତ୍ତର ଦେବାପାଇଁ ଯଦିଓ ବାଧ୍ୟ କିମ୍ବା ପ୍ରସ୍ତୁତ ନ ଥିଲା ଅଂଶୁମାନ, ତଥାପି ଶାନ୍ତ, ସଂଯତ ପ୍ରକୃତିସୁଲଭ ସ୍ୱରରେ ଉତ୍ତର ଦେଲା “ଯାଉଛି ଘରକୁ” । —କେବେ ଆସିବ ?

ସାତଦିନ ଛୁଟି ନେଇଛି ତ……

—ମାନେ ! ଆଉ ଡେରି ବି ହୋଇପାରେ !

ତା’ କହିହେବନି, ଶୀଘ୍ର ବି ଆସିଯାଇପାରେ । ଠିକ୍ ଏତିକିବେଳେ ଅଂଶୁମାନର ନଜର ପଡ଼ିଲା ରତିକାନ୍ତ ଘରର ଛାତ ଉପରେ । ଛାତ ଉପରେ ଶର୍ମିଷ୍ଠାର ହଠାତ୍ ଆଗମନରେ ସେ ଆତ୍ମବିସ୍ମୃତ ହୋଇଗଲା । ରତିକାନ୍ତ ତାକୁ ବାଟ ଛାଡ଼ିଦେଇ ଆଗକୁ ଚାଲିଗଲା । ସନ୍ଧ୍ୟାର ଝାପ୍ସା ଛାୟାନ୍ଧକାର ମଧ୍ୟରେ ଅଂଶୁମାନ ହ୍ୟାଣ୍ଡବ୍ୟାଗ୍‌ଟାକୁ ଉପରକୁ ଉଠାଇ ଶର୍ମିଷ୍ଠାର ଦୃଷ୍ଟି ଆକର୍ଷିତ କରିବାକୁ ଚେଷ୍ଟାକଲା । ଶର୍ମିଷ୍ଠା ନିଶ୍ଚୟ ବ୍ୟାଗ ଦେଖି ଅନୁମାନ କରିନେବ ତା’ର ସହର ଛାଡ଼ି କିଛିଦିନ ବାହାରକୁ ଯିବା ବିଷୟ । ଅଂଶୁମାନର ଅନୁମାନ ଠିକ୍ । ଶର୍ମିଷ୍ଠା ହାତ ହଲାଇ ତାକୁ ବିଦାୟ ସମ୍ବର୍ଦ୍ଧନା ଜଣାଇଲା । ଅଂଶୁମାନର ହୃଦୟରୁ ଏକ ବୋଝ ଅପସରିଗଲା ।

ହାତରେ ଆଉ ସମୟ ନ ଥିଲା । ଲମ୍ବା ଲମ୍ବା ପାହୁଣ୍ଡ ପକାଇ ଅଂଶୁମାନ କୌଣସି ମତେ ସେତକ ରାସ୍ତା ଅତିକ୍ରମ କରି ସଙ୍ଗେ ସଙ୍ଗେ ଚାଲିବାକୁ ଆରମ୍ଭ କରିଥିବା ବସ୍ ଉପରକୁ ଚଢ଼ିଗଲା । ପଛରେ ଛାଡ଼ି ଆସିଥିବା ସହରର ସ୍ମୃତି ଝାପ୍ସା ହୋଇଯାଇ ସମ୍ମୁଖ ରାସ୍ତାର ଲମ୍ବା ଛାତି ଉପରେ ଦୃଷ୍ଟି ତାର ପହଁରିଗଲା । ମାଇଲ ମାଇଲ ଦୂରତ୍ୱ ଅତିକ୍ରମ କରି ମନ ତା’ର ପହଞ୍ଚିଗଲା ନିଜ ସହରର ମଝିରେ ଥିବା କ୍ଷୁଦ୍ର ଅଥଚ ସୁନ୍ଦର

ଘରଟିର ଅଗଣାରେ, ଯେଉଁଠି ତୁଳସୀ ମୂଳେ ସନ୍ଧ୍ୟାବତୀ ଜାଳିଦେଇ ମା' ତା'ର ଶୁଭକାମନା କରେ । ମା'ର ଦେହ ଏଥର କ'ଣ ବେଶୀ ଖରାପ । ଅଂଶୁମାନ ଗ୍ଲାନିରେ କାଏ ଛୁଆଁ କାଠିଭଳି କଲା ଯେପରି । ମନେପଡ଼ିଲା ସେ ତା' ନିର୍ଜନ ଘରର ଖଟ ଉପରେ ଚିତ୍ ହୋଇ ଶୋଇ ମା' ସମ୍ପର୍କରେ ନିଜ ଅଜାଣତରେ ଅଶୁଭ କାମନା କରେ । ପୁନର୍ବାର ମନକୁ ସାନ୍ତ୍ୱନା ଦିଏ ଯେ ଏଇ ନିୟମ କେବଳ ତା ମା' ପାଇଁ ନୁହେଁ । ସମସ୍ତ ସଂସାର ପାଇଁ । କିନ୍ତୁ ଏକଥା ସେ କ'ଣ ବିଗ୍ରହ କରିଛି ଦାର୍ଶନିକ ଦୃଷ୍ଟି କୋଣରୁ ନା ନିଜର ସ୍ୱାର୍ଥ ଦୃଷ୍ଟିରୁ ?

ଏହାବି ଅନୁଦାର୍ଶନିକ ଚିନ୍ତାଧାରା ପରିସ୍ଥିତି ରୂପରେ ତା ମନକୁ ପ୍ରବେଶ କରିଛି । ମା'ଠାରୁ ଦୁନିଆରେ ଆଉ ତା' ପାଇଁ ଅଧିକ କେହି ପ୍ରିୟ ହୋଇପାରେ, ଏକଥା କେବେ କଳ୍ପନା ସୁଦ୍ଧା ସେ କରିନାହିଁ । ତଥାପି ମା' ସମ୍ପର୍କରେ ଏରୂପ ଖରାପ ଚିନ୍ତା ସେ ନ ଚାହିଁଲେ ମଧ୍ୟ ତା ମନକୁ ପ୍ରବେଶ କରିଯାଏ କାହିଁକି ? ଶର୍ମିଷ୍ଠା ପାଇଁ ? ……ନା ତା' ମା'ର ପବିତ୍ର ଏବଂ ନୈତିକ ଜୀବନଧାରା ପ୍ରତି ଭୟ କରି ?

କିନ୍ତୁ ଏମିତି କିଛି ହୋଇଯାଇପାରେ ବୋଲି ସେ ପୂର୍ବରୁ କେବେ ଚିନ୍ତା କମ୍ବା ଆଶା କରିନଥିଲା । ଶର୍ମିଷ୍ଠାକୁ ସେ ବିବାହ କରିବ ବୋଲି ସେ ପ୍ରତିଜ୍ଞା କରିବ ଏହାଠୁ ଅସମ୍ଭବ ବ୍ୟାପାର ତା ଜୀବନରେ ଆଉ କ'ଣ ଘଟିପାରେ !! ଅଂଶୁମାନ ସେକଥା ଭାବିଲେ ତାକୁ ପାଗଳା ହୋଇଗଲା ପରି ମନେହୁଏ । ମା'ର ଅନୁମତିକୁ ଯେ ସବୁବେଳେ ଗୁରୁତ୍ୱ ଦେଇ ଆସିଛି ଆଜି ପର୍ଯ୍ୟନ୍ତ ତା'ର ଅଗୋଚରରେ ସେ ଏତେବଡ଼ ପ୍ରତିଜ୍ଞା କରିଦେଲା କେମିତି ? ଅଂଶୁମାନ କ'ଣ ଅଜିଯାଏ ଜାଣି ନ ଥିଲା ତା'ର ଏକ ଭିନ୍ନ ସତ୍ତା ଅଛି । ମା'କୁ ବାଦ ଦେଇ ଆହୁରି ଅନେକ କିଛି ନିଷ୍ପତ୍ତି ଏକା ଏକା ଦେବାକୁ ନେବାକୁ ହୁଏ ତାକୁ ଏ ବିଷୟରେ ସଚେତନ କରିଦେଇଥିଲା ଶର୍ମିଷ୍ଠାର ଭାଇ ରତିକାନ୍ତ ।

ଏକଦା ତା'ଘରେ ଝଡ଼ ଭଳି ପ୍ରବେଶ କରି ଦ୍ୱିଧାସଙ୍କୋଚ ପ୍ରଶ୍ନବାଣ ନିକ୍ଷେପ କରିଥିଲା । ନିହାତି ଅଶୋଭନୀୟ ମୁଦ୍ରାରେ, ଚୌକିରେ ବସିପଡ଼ି ଟେବୁଲ ଉପରେ ଗୋଡ ଥୋଇଦେଇ ପ୍ରଶ୍ନ କଲା, ଏଇ । ଶର୍ମିଷ୍ଠା ସଙ୍ଗରେ କ'ଣ ତମର ଏତେ କଥା-ବାର୍ତ୍ତା ? ଜାଣ ଶର୍ମିଷ୍ଠା ମୋ ଭଉଣୀ ? ତା'ର ସମ୍ମାନ ହାନି ହେଲେ ମୋ ସମ୍ମାନରେ ଆଞ୍ଚ ଆସିବ ।

ହଠାତ୍ କିଛି ବୁଝି ପାରିନଥିଲା ଅଂଶୁମାନ । ତା ଭଳି ଜଣେ ବ୍ୟକ୍ତି ସହିତ ଇତର ଅଭଦ୍ର ରତିକାନ୍ତ ଏପରି ବ୍ୟବହାର କରିପାରେ ଏହା ଲକ୍ଷ୍ୟ କରି ତା ମୁଣ୍ଡକୁ ପିତ୍ତ ଚଢ଼ି ଯାଇଥିଲା । ଏଇ ଅଭଦ୍ରାମିର ପ୍ରତ୍ୟୁତ୍ତର କ'ଣ ସେ ତାକୁ ଦେଇଥାଆନ୍ତା ଏ କଥା ଭାବିବା ପୂର୍ବରୁ ସେ ଭାବିଥିଲା ରତିକାନ୍ତ ଶର୍ମିଷ୍ଠାର ଭାଇ । ସେ ହସି ହସି ତାକୁ

ଶାନ୍ତ ଭାବରେ ତାର ବକ୍ତବ୍ୟ ପ୍ରକାଶ କରିବାକୁ ଅନୁରୋଧ କରିଥିଲା । ରତିକାନ୍ତ ଅତି ଟିକିଏ ସାହସ ଦେଖେଇବାକୁ ଯାଇ କହିଲା, ଆମେ ଖ୍ରୀଷ୍ଟିୟାନ ନୋହୁଁ ହିନ୍ଦୁ । ଶର୍ମିଷ୍ଠା ସହିତ ତମ ବହୁତ ମିଳାମିଶା କରି ତମ ପ୍ରତି ଅନ୍ୟ କିଛି ଧାରଣା ପୋଷଣ କରେ, ଏଇସେପରି ତମେ ହୁଏତ ତାକୁ ଭଲ ପାଉଛ ବା ତମେ ଯଦି କେବେ ଭାବନ୍ତ ଶର୍ମିଷ୍ଠାର ତମ ପ୍ରତି ଦୁର୍ବଳତା ଅଛି, ତେବେ ତା'ର ଫଳାଫଳ କ'ଣ ହେବ କେବେ ଚିନ୍ତା କରିଛ ?

ଅଂଶୁମାନ ଏତେଦୂର କେବେ ଭାବିନାହିଁ କି ତା'ର ଫଳାଫଳ କଣ ହେବ ଚିନ୍ତା କରିନାହିଁ । ଶର୍ମିଷ୍ଠା ସହିତ ତାର ସାମାନ୍ୟ ପରିଚୟ । କିନ୍ତୁ ଏତେ ଅଗକୁ ଭାବିଯାଇ ରତିକାନ୍ତ କଣ ଉପସ୍ଥାପନ କରିବାକୁ ଚାହୁଁଛି ! ସେ କଣ ପରୋକ୍ଷ ଭାବରେ ଜଣାଇ ଦେବାକୁ ଚାହୁଁଛି ସେ ଶର୍ମିଷ୍ଠାକୁ ବିବାହ ଦେବାପାଇଁ ଅସମର୍ଥ । ଅତଏବ ଶର୍ମିଷ୍ଠାକୁ ସେ ଭଲପାଉ···ବିବାହ କରୁ । କି ଅସମ୍ଭବ ବ୍ୟାପାର । ରତିକାନ୍ତକୁ ଉଚିତ ଶିକ୍ଷା ଦେଇ ସେଇ ମୁହୂର୍ତ୍ତରେ ସେ ଧକ୍କା ମାରି ଘରୁ ବାହାର କରି ଦେବାକୁ ଯାଉଥିଲା । ହଠାତ୍ ସେ ଘରେ ଶର୍ମିଷ୍ଠାର ଅବିର୍ଭାବ ଦୃଶ୍ୟକୁ ଓଲଟପାଲଟ କରିଦେଲା । ଗ୍ରୁଏଁ ଗ୍ରୁଏଁ ଏକ ଅଦୃଶ୍ୟ ନିର୍ଦ୍ଦେଶରେ ଦୃଶ୍ୟ ପଟ ବଦଳି ଗଲାପରି । ଶର୍ମିଷ୍ଠା ଅପମାନ ଜର୍ଜରିତ ହୋଇ କହିଲା—ଭାଇଙ୍କର ବ୍ୟବହାର ନିମନ୍ତେ ମୁଁ ଦୁଃଖିତ । ମଦପିଇ ପିଇ ତାଙ୍କ ମୁଣ୍ଡ ଖରାପ ହୋଇ ଗଲାଣି । ଯଦି ସମ୍ଭବ, ଆମକୁ କ୍ଷମା କରିବେ ।

ତଟସ୍ଥ ହୋଇ ଛିଡା ହୋଇଥିଲା ଅଂଶୁମାନ । ଭାଇକୁ ଟାଣି ଟାଣି ନେଇ ସେ ଘରୁ ବାହାରି ଯାଉଥିଲା ଶର୍ମିଷ୍ଠା । ରତିକାନ୍ତ ପଛକୁ ଚାହିଁ ହୋଇ କହିଲା, ଭାରି ମଉମାହାସ ଅଛି ମୋ'ର । ସତେ ଯେମିତି ଶର୍ମିଷ୍ଠାକୁ ବାନ୍ଧା ହୋଇପଡ଼ିବ···ହେଃ··· ଯେତେବେଳେ ନେଳିଗୁଡ଼ କହୁଣୀକୁ ବୋହିଯିବ ନା, କେହି ପିଠିରେ ପଡ଼ିବେ ନାହିଁ । ଛି, ସବୁ ଏଇ ଭଦ୍ରଲୋକଙ୍କୁ ମୁଁ ଚିହ୍ନିଛି । ଆମେ ବଡ଼ ବଜାରରେ ସମସ୍ତଙ୍କ ସାମ୍ନାରେ ଯାହା କରୁ । ଏଗୁଡ଼ାଙ୍କର ସବୁ ଲୁଚି ଚୋରି କାରବାର ।

ଏଥର ଅଂଶୁମାନର ଶେଷ ସୀମା ଆସିଯାଇଥିଲା ସହ୍ୟ କରିବାର । ହଠାତେ ସେ ରତିକାନ୍ତର ହାତକୁ ଝିଙ୍କି ଆଣି ଜବରଦସ୍ତ ଚେୟାରରେ ବସାଇଦେଲା । ଆଲମିରାରୁ ଖଣ୍ଡେ କାଗଜ ଆଣି ଥରେ ଶର୍ମିଷ୍ଠାକୁ ପୂର୍ଣ୍ଣ ଦୃଷ୍ଟିରେ ନିରୀକ୍ଷଣ କଲା । ତା'ପରେ ଚିତ୍କାର କଲାପରି କହିଲା, ଆଜି ଏଇ କାଗଜରେ ମୁଁ ତୁମକୁ ଲେଖି ଦେଉଛି ମୁଁ ଶର୍ମିଷ୍ଠାକୁ ବିବାହ କରିବା ନିମନ୍ତେ ପ୍ରତିଶ୍ରୁତିବଦ୍ଧ । ଏପରି ଅଭାବନୀୟ ଘଟଣାରେ ଶର୍ମିଷ୍ଠାର କଲ୍ପନାତୀତ ଥିଲା ! ଅପ୍ରସ୍ତୁତ ହୋଇ ସେ କକ୍ଷରୁ ନିଷ୍କ୍ରାନ୍ତ ହୋଇଯାଇଥିଲା । ତା'ପରେ ଶର୍ମିଷ୍ଠା ଆପେ ଆପେ ତାକୁ ଭଲ ଲାଗିଥିଲା । ରତିକାନ୍ତର ବ୍ୟବହାରରେ ଯଦିଓ କିଛିଟା ପରିବର୍ତ୍ତନ ଆସିଥିଲା, ତଥାପି ସେ ଅଂଶୁମାନ ଉପରେ କଡ଼ା ନଜର ରଖିଥିଲା ।

ଏମିତି ନାଟକୀୟ ଉତ୍ତେଜନାରୁ ମୁକ୍ତ ହୋଇ ଯେତେବେଳେ ଅଂଶୁମାନ ନିଜ ଭିତରକୁ ଫେରି ଆସିଲା ତା ଆଖି ସାମ୍ନାରେ ଶର୍ମିଷ୍ଠାକୁ ବିବାହ କରିବାରେ ସବୁଠାରୁ ବଡ଼ ଏବଂ ଏକମାତ୍ର ପ୍ରତିବନ୍ଧକ ମନେହେଲା ତା' ମା'ର ଧର୍ମନିଷ୍ଠା । ମା' ନିକଟରେ ସେ ନିଜେ ଯାଇ କି ଏ କଥା କହିବ ? କ'ଣ କହିବ ? ମା ତାର ସବୁ କଥା ବାଧ୍ୟତା-ମୂଳକ ଭାବେ ନିଜ ଅଧିକାରର ଅନ୍ତର୍ଭୁକ୍ତ କରି ଆଣି ନ ଥିଲେ ମଧ୍ୟ ଏପରି କୌଣସି କଥା ତା ଜୀବନରେ ମା'ର ବିନା ସ୍ୱୀକୃତିରେ ଘଟିନାହିଁ । ମା'ର ସତ୍ତାକୁ ବିସ୍ମରଣ କରି ସେ ଏତେଦୂର ଅଗ୍ରସର ହୋଇପଡ଼ିଲା କେମିତି ? ଶର୍ମିଷ୍ଠା ଖ୍ରୀଷ୍ଟିୟାନ । ମା ତାକୁ କେବେ ମଧ୍ୟ ବୋହୂ ହିସାବରେ ସ୍ୱୀକୃତି ଦେବ ନାହିଁ କି ସେ ନିଜେ ଶର୍ମିଷ୍ଠାକୁ ଜୀବନର ପରିଧିରୁ ଏଡ଼ାଇ ଯାଇ ପାରିବ ନାହିଁ । ତେଣୁ ତାକୁ ଅପେକ୍ଷା କରିବାକୁ ପଡ଼ିବ ମା'ର ...ହେଃ କ'ଣ ସେ ଭାବୁଛି......

ଅଂଶୁମାନର ବଦ୍ଲି ପରୱାନା ଯାଇଥିଲା ତା'ର ଘର ଥିବା ଛୋଟିଆ ସହରରେ । ମା'ର ଦେହ ବିଶେଷ ସେପରି ଅସୁସ୍ଥ ନ ଥିଲା । ଅଂଶୁମାନ ପରଦିନ ମା'କୁ ନେଇ ଫେରି ଆସିଲା ।

ଏବେ ଅଂଶୁମାନର ବଡ଼ ସଙ୍କଟମୟ ପରିସ୍ଥିତି । ତା'ଘରେ କେବେ କେମିତି ଶର୍ମିଷ୍ଠାର ଉପସ୍ଥିତିକୁ ମା' କିପରି ଭାବରେ ଗ୍ରହଣ କରୁଛି ଅଂଶୁମାନ ପକ୍ଷରେ ଜାଣିବା ସମ୍ଭବପର ନ ଥିଲା ।

ଥରେ ଅଂଶୁମାନ ସ୍ପଷ୍ଟ ଜଣାଇ ଦେଇ ଥିଲା, ମୋ ପାଇଁ ମା'କୁ ମୁଁ ଅବମାନନା କରିପାରେନା କି ମା' ପାଇଁ ତମକୁ ବି ମୁଁ ଏଡ଼ାଇ ଯାଇ ପାରେନା । ଅତଏବ ତୁମକୁ ଅନେକ ଦିନ ଅପେକ୍ଷା କରିବାକୁ ହେବ ।

ପ୍ରଥମେ ଯେଉଁଦିନ ଶର୍ମିଷ୍ଠା ଆସି କବାଟ ଠକ୍ ଠକ୍ କଲା ଅଂଶୁମାନ କବାଟ ଖୋଲିବାର ସୁଯୋଗ ପାଇ ନ ଥିଲା । କବାଟ ଖୋଲିଲା ମା । ଅପ୍ରୀତିକର ବଜ୍ରପାତ ହେଲାପରି ଶର୍ମିଷ୍ଠା ଚମକି ପଡ଼ିଲା । ମା' ମଧ୍ୟ ତାକୁ ଦେଖି ଯେପରି ହତବୁଦ୍ଧି ହୋଇ ଯାଇଥିଲା । ଅବିବାହିତ ରହିବାକୁ ଜିଦ୍ ଧରିଥିବା ଅଂଶୁମାନର ଘରକୁ ଏକ ଅଳ୍ପବୟସ୍କା ସୁନ୍ଦରୀ ଝିଅଟିର ଆଗମନ ତାକୁ ହତଚକିତ କରି ଦେଇଥିଲା । ଅଂଶୁମାନକୁହିଁ ଦୁଇଜଣଙ୍କ ଭିତରେ ସହଜ ସମ୍ପର୍କ ଫେରେଇ ଆଣିବାକୁ ପଡ଼ିଲା । ଶର୍ମିଷ୍ଠା ବି ଏକ ଆବେଗରେ ମା'ର ପାଦ ଦୁଇଟି ଉପରେ ନିଜର କପାଳ ଲଗାଇ ରଖିଥିଲା । ଅପ୍ରସ୍ତୁତ ହୋଇ ତାକୁ ଉଠାଇ ମା' କୋଳରେ ବସାଇବା ପର୍ଯ୍ୟନ୍ତ ସେ ପ୍ରକୃତିସ୍ଥ ହୋଇ ପାରି ନ ଥିଲା ।

ପରଦିନ ମନ୍ଦିରରୁ ଫେରିବା ବାଟରେ ଅଂଶୁମାନ ମା'କୁ ପ୍ରଶ୍ନକଲା, କ'ଣ ଠାକୁରଙ୍କ ପାଖରେ ମାଗିଲୁ ?

ମୋର ସର୍ବ ଜୀବନ, ସ୍ମିତ ହସି ମା' ଉତ୍ତର ଦେଲ ।

ସତେ ! ଅଂଶୁମାନ ହାଲକା ହସିଲା ।

ଆଉ, ତୁ ଯେ ପର୍ଯ୍ୟନ୍ତ ବାହା ନ ହେଉଛୁ ସତେ ବଞ୍ଚିବା ପାଇଁ ଅଧିକ ଆୟୁ ଦେବା ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିବାକୁ ପଡ଼ିବ । ମୁଁ କେବଳ ତୋର ପାଇଁ ବଞ୍ଚିଛିରେ ଅଂଶୁ ! ମୋର ଆଉ ଜୀବନ ପ୍ରତି କି ମମତା ଅଛି ? ମୋ ଅନୁପସ୍ଥିତିରେ ତୋ କଥା କିଏ ବୁଝିବ ? ବିବାହ ସପକ୍ଷରେ ମୋର ସେମିତି କିଛି ଯୁକ୍ତି ନାହିଁ । ତଥାପି ଜୀବନର ସନ୍ଧ୍ୟାରେ ଗୃହଲକ୍ଷ୍ମୀଟିଏ ଅବଶ୍ୟକ । ଏହାଙ୍କ ଜୀବନ ନିତ ନିଃସଙ୍ଗ ।

ବହୁଚେଷ୍ଟା ସତ୍ତ୍ୱେ ଅଂଶୁମାନ ହୃଦୟର କଥା ଖୋଲି କହି ପାରିଲ ନାହିଁ । ସେ ଦେଖିଛି ଧର୍ମ ପ୍ରତି ତା' ମା'ର କି ନିଷ୍ଠା । ଠାକୁର ଘର ଦୁଆର ମୁହଁକୁ ଯିବାକୁ ହେଲେ ଗାଧୋଇ ପାଧୋଇ ଭଲ ବସ୍ତ୍ର ପିନ୍ଧି ଯିବାକୁ ହେବ । ମା ଘଣ୍ଟା ଘଣ୍ଟା ଧରି ଧ୍ୟାନରେ ବସେ । ଚୁପ୍ ଚୁପ୍ ଆଖିରୁ ଲୁହ ଗଡ଼ାଇ ମନକୁ ମନ ଠାକୁରଙ୍କ ଆଗରେ କ'ଣସବୁ କହେ । ଗୀତା ଭାଗବତ ପଢ଼ି ତାଙ୍କୁ ଶୁଣାଏ । ଏସବୁ କଥା ତା'ର ମନେ ପଡ଼ିଗଲା ପରେ ଶର୍ମିଷ୍ଠା ନାମଟିରେ ଶବ୍ଦଟିଏ ସୁଦ୍ଧା ଉଚ୍ଚାରଣ କରିବାକୁ ତା'ର ସାହସ କୁଲାଏନା । ତା'ର ଭୟ ହୁଏ ତା'ର ପ୍ରସ୍ତାବ ଶୁଣି ମା'ର ଦୁର୍ବଳ ଗ୍ରନ୍ଥିର ହୃଦୟର ସ୍ପନ୍ଦନ ଯଦି ବନ୍ଦ ହୋଇଯାଏ......

କବାଟ ଠକ୍ ଠକ୍ ହେଲା, କିଏ ଆସିଛି । ମା ଯାଇ କବାଟ ଖୋଲୁଛି । ଅଂଶୁମାନ ଏ ଘରୁ ଆଉ ଝରକା ବାଟେ ଚାହିଁଲା । ଶର୍ମିଷ୍ଠା ଆସିଛି । ସେ କିଛି ନ ଜାଣିଲା ପରି ଚୁପ୍ ଚୁପ୍ ଶୋଇ ରହିଲା ।—ଏଇ ବହିଟା ନେବାକୁ ଆସିଛି । ଶର୍ମିଷ୍ଠାର ସ୍ୱର । ମା' ବହିଟା ନେବା ପରେ ଶର୍ମିଷ୍ଠା ବୋଧହୁଏ ଫେରି ଯାଉଛି ।

ଛିଃ ବସ...ଫେରିଯାଉଛୁ କାହିଁକି । ଆଉଥରେ ଅଂଶୁମାନ ଆଉ ଘରର ଦୃଶ୍ୟ ଲକ୍ଷ୍ୟ ନ କରି ସ୍ଥିର ରହି ପାରିଲ ନାହିଁ । ଅଗତ୍ୟା ଶର୍ମିଷ୍ଠା ବର୍ତ୍ତମାନ ମା ସମ୍ମୁଖରେ ଚେୟାର ଉପରେ ବସିଛି ।

ଚୁପ୍ ଚୁପ୍ ଶୋଇପଡ଼ି ଅଂଶୁମାନ ଉତ୍କଣ୍ଠ ହୋଇ ରହିଲ ।—ଅଂଶୁ ସହିତ ତମେ କ'ଣ ଏକା ଜାଗାରେ କାମ କର ? ମା'ର ପ୍ରଶ୍ନ ।—ନା...ମୁଁ ପଢ଼ୁଛି, ଏମ୍ ଏ. ଶର୍ମିଷ୍ଠାର କୁଣ୍ଠିତ ଉତ୍ତର ।

ଏଇ ପାଖ ଘରଟା ତମର ?

ହଁ ।

—ତା ହେଲେ ମୁଁ ମଲାବେଳେ ଆସୁଥିବ ଏ ଘରକୁ ?

ଅଂଶୁମାନ ଶୁଣୁଥିଲେ ହାତୁଡ଼ି ପିଟିହେବାର ଶବ୍ଦ । ଏତେବେଳେ ପ୍ରତିଜ୍ଞା କରି ସେ କେବଳ ଅନ୍ୟାୟ କରୁଛି, ମହତ୍ତ୍ୱବଡ଼ ଭୁଲ କରୁଛି ।

ଶର୍ମିଷ୍ଠାର ଅପ୍ରସ୍ତୁତ ଉତ୍ତର ତା କାନକୁ ଅସ୍ପଷ୍ଟ ଶୁଭୁଛି ।

—ଏଠାକୁ ଆସିଲେ ତମ ଘରେ ଆପତ୍ତି କରନ୍ତି ନାହିଁ ।

ପୁନର୍ବାର ନୀରବତା ।

—ଅଂଶୁମାନ ବାହାହେବ ନାହିଁ ବୋଲି ଜିଦ୍ ଧରିଛି ଜାଣିଛ ?

ତଥାପି ନୀରବ ଶର୍ମିଷ୍ଠା ।

—ସେ ତମକୁ ଏ ବିଷୟରେ କିଛି କହିନ…'

ନା…

ମୁଁ—ତମକୁ କହୁଛି ଶୁଣ—ଅଂଶୁମାନ ମୋ ପୁଅ ବୋଲି ମୁଁ ତାର ଅଯଥା ପ୍ରଶଂସା କରୁନ । ସେ ଭଦ୍ର, ସଂଯତ, ଚରିତ୍ରବାନ, ତା ସମ୍ମାନରେ ଆଞ୍ଚ ଆସିଲି ପରି ଘଟଣା ମୁଁ ଘଟିବାକୁ ଦେବିନ । ତାକୁ ସବୁ ପ୍ରଶ୍ନ ମୁଁ ମିଥ୍ୟାପ୍ରମାଣ କରିବି । ତମର ସମ୍ମାନରେ ମଧ ମୁଁ ଆଞ୍ଚ ଆଣିବାକୁ ଚାହୁଁନ ।

ଅଂଶୁମାନ ମନରେ ଝଡର ତାଣ୍ଡବ ନୃତ୍ୟ ଆରମ୍ଭ ହୋଇଯାଇଥିଲା । ପ୍ରତି ମୁହୂର୍ତ୍ତରେ ସେ ଏକ ଭୟଙ୍କର ବିସ୍ଫୋରଣର ଅଶଙ୍କା କରୁଥିଲା ।

—ତମେ କଣ ଅଂଶୁମାନକୁ ପସନ୍ଦ କର ?

ମା… ମାତର କଣ୍ଠ ଶର୍ମିଷ୍ଠାର ।

—କୁହ, ଅଂଶୁମାନକୁ ତମେ ପସନ୍ଦ କର କି ନାହିଁ ?

ହଁ ।

ଅଂଶୁମାନକୁ ତମେ ବାହାହେବ ? ଏ କଥା ମୁଁ କହୁଛି ଅଂଶୁମାନର ମା । ତମର ମତ ଜାଣିଲେ ମୁଁ ତମ ଘରକୁ ଯିବି ।

ଅଂଶୁମାନ ଏ ଅକଳ୍ପନୀୟ ପରିସ୍ଥିତିର ସାମ୍ନା କରିବା ପାଇଁ ସାହାସ ଖୋଜି ପାଉ ନଥିଲା ।

ଶର୍ମିଷ୍ଠା ଅତି ନମ୍ର କଣ୍ଠରେ କହିଲା, ମା ! ମୋର କିଛି କହିବାର ଅଛି ।

କୁହ ଝିଅ, ମା ଶର୍ମିଷ୍ଠାର ହାତ ଧରି ଟାଣିନେଲେ ଆବେଗରେ ।

ମା ! ମୁଁ ଆପଣଙ୍କ ଦୃଷ୍ଟିରେ ସବୁଦିଗରୁ ଉପଯୁକ୍ତ ହେଲେ ମଧ୍ୟ...ଶର୍ମିଷ୍ଠା କଥା ସମାପ୍ତ କରିପାରିଲା ନାହିଁ ।

କୁହ ଝିଅ...ଅଧାରୁ ରହିଗଲୁ କାହିଁକି ? ନୈତିକ ଦୋଷ ମୋର ଦରକାର ନାହିଁ । ଘରଦ୍ୱାର ବା ତମ ବାପାଙ୍କର ଉଚ୍ଚ ପଦମର୍ଯ୍ୟାଦା ମଧ୍ୟ ମୁଁ ଚାହେଁ ନାହିଁ । ମୁଁ କେବଳ ଚାହେଁ ତମଭଳି ଝିଅଟିଏ ।

ଏଥର ଖଟ ଉପରୁ ଉଠିପଡ଼ି ଅଂଶୁମାନ ଦ୍ୱାରଦେଶ ନିକଟରେ ଠିଆହେଲା । ଦେହରୁ ଝାଳ ବୋହିଯାଇ ତାକୁ କେମିତି ଶିହରିଆ ଲାଗିଲା ।

ଏବେ କ'ଣ ଶର୍ମିଷ୍ଠା କହିବ ।

ଅଂଶୁମାନର ହୃଦ୍‌ସ୍ପନ୍ଦନ ଦ୍ୱିଗୁଣିତ ହେଲା । କ'ଣ ଘଟିବ ବର୍ତ୍ତମାନ !!

କିଛି ଡରି ଶର୍ମିଷ୍ଠା କହିଲା, ମା ମୋର ଧର୍ମ ଆପଣଙ୍କଠାରୁ ଭିନ୍ନ ! ମୁଁ ଖ୍ରୀଷ୍ଟିୟାନ ।

ପରବର୍ତ୍ତୀ ଦୃଶ୍ୟ ଦେଖିବା ପୂର୍ବରୁ ଅଖି ବନ୍ଦ କରିଦେଲେ ଅଂଶୁମାନ ।

କିନ୍ତୁ ଝଡ଼ ବତାସ, ବଜ୍ରପାତ ପରିବର୍ତ୍ତେ ସେ ଅନୁଭବ କଲା ସେ ଘରେ ଯେପରି ବସନ୍ତର ମୃଦୁମଳୟ ମନ୍ଦ୍ରକୁ ସ୍ପର୍ଶକରି ବହିଯାଉଛି । ମା'ର ଶାନ୍ତ ଅଥଚ ଗମ୍ଭୀର ମୁଖମଣ୍ଡଳ ।—ଝିଅ ! ମା କହୁଛି—କି ଖ୍ରୀଷ୍ଟିୟାନ, କି ହିନ୍ଦୁ ସମସ୍ତେ ଈଶ୍ୱରଙ୍କ ସନ୍ତାନ । ସକଳ ଘଟେ ନାରାୟଣ । ଜାତି, ଧର୍ମ ଭିନ୍ନ, ହେଲେ ମଧ୍ୟ ଆତ୍ମା ଏକ—ତାର ଧର୍ମ ନାହିଁ ବର୍ଣ୍ଣ ନାହିଁ, ରୂପ ନାହିଁ, ତମେ ଏତେ ପଢ଼ିଛ, ଏତିକି ଜାଣନା ?

ଅଂଶୁମାନ ଆଉ ନିଜକୁ ସମ୍ଭାଳି ରଖି ପାରିଲା ନାହିଁ । ଦଉଡ଼ି ଯାଇ ମା'କୁ କୁଣ୍ଢେଇ ଧରି ଶ୍ୱାନଟିଭଳି ହେଲପରି କାନ୍ଦି ଉଠିଲା । ପିଲାଦିନେ ମା'କୁ ଜଡ଼ାଇ ଧରି ଚିତ୍କାର କରି ସେ କାନ୍ଦି ପାରୁଥିଲା, ଆଜି ହୃଦୟରୁ ଉଦ୍‌ଗତ କ୍ରନ୍ଦନକୁ ସେ ପାରୁଧର୍ଯ୍ୟନ୍ତ ରୋକିବାକୁ ଯାଇ ମଧ୍ୟ ଅଧିକ କ୍ରନ୍ଦନଶୀଳ ହୋଇ ଉଠୁଥିଲା । ମା'କୁ ସେ ଯେତେ ଭଲ ପାଇଲେ ବି, ସମ୍ମାନ ଦେଲେ ବି, କେତେ କମ୍ ଚିହ୍ନିଛି !!



## ବିଶ୍ୱ ମହାନ୍ତିଙ୍କ ଅନ୍ୟାନ୍ୟ ପୁସ୍ତକ

ସପ୍ତରଙ୍ଗ (କବିତା ଓ ଗୀତ), ୧୯୮୫

ଆଷାଢ଼ ମେଘର ରଙ୍ଗ (ଉପନ୍ୟାସ), ୧୯୮୫

ଆଇନାର ଦୁଇ ପାଖ (କ୍ଷୁଦ୍ରଗଳ୍ପ), ୧୯୯୦

ପ୍ରତିଚ୍ଛାୟା (କ୍ଷୁଦ୍ରଗଳ୍ପ), ୧୯୯୦

ଆଜିର ଓଡ଼ିଆ ଲେଖିକାମାନଙ୍କ ମଧ୍ୟରେ ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖି ପାରିଥିବା **ବିଭା ମହାନ୍ତି**ଙ୍କ ଜନ୍ମ ବ୍ରହ୍ମପୁର ସହରରେ ୧୯୪୭ ମସିହା ଡିସେମ୍ବର ଦୁଇ ତାରିଖ ଦିନ । କବିତା ରଚନାରୁ ଲେଖିକାୟ ଜୀବନ ଆରମ୍ଭ କରିଥିଲେ ମଧ୍ୟ ସେ ମୁଖ୍ୟତଃ ଜଣେ କଥା-ଶିଳ୍ପୀ "ଅଦୃଶ୍ୟ ଅମୃତ"କୁ ମିଶାଇ ଏଯାବତ୍ ତାଙ୍କର ତିନୋଟି ଗଳ୍ପ-ସଙ୍କଳନ ଓ ଗୋଟିଏ ଉପନ୍ୟାସ ପ୍ରକାଶିତ । କୌଣସି ଆଙ୍ଗିକ ବା ପରୀକ୍ଷା ନିରୀକ୍ଷାର ମାୟା-ଜାଲ ମଧ୍ୟରେ ନ ପଡ଼ି,ଆଧୁନିକ ଓଡ଼ିଆ ଜୀବନର ଘାତ-ପ୍ରତିଘାତ,ବିଡ଼ମ୍ବନା,ଅବକ୍ଷୟ ଓ ହତାଶାବୋଧର ମାର୍ମିକ ପ୍ରକାଶ ସଙ୍ଗେ ସଙ୍ଗେ ପିଟର୍, ଲୋକନାଥ ବାବୁ, ଚିନ୍ନାମା ଓ ଅଂଶୁମାନ୍‌ର ମା'ଙ୍କ ଭଳି ସ୍ମରଣୀୟ ଚରିତ୍ରମାନଙ୍କୁ ସୃଷ୍ଟି କରିବାରେ ସେ ବରଂ ବେଶୀ ଆଗ୍ରହୀ ।

ସଂପ୍ରତି ସେ ସ୍ୱାମୀ ଡାକ୍ତର କୃଷ୍ଣ କୁମାର ମହାନ୍ତି ଓ ଦୁଇ ପୁତ୍ର ସତ୍ୟକାମ ଓ ସ୍ୱୟଂପ୍ରକାଶଙ୍କ ସହ ଜଟଣୀସ୍ଥ ବିକାଶ [illegible] ନିଜ ଉଦ୍ୟାନ-ଗୃହରେ ବାସ କରୁଛନ୍ତି । ଖୁବ୍ ନିକଟରେ ତାଙ୍କର ଆଉ ଏକ ଉପନ୍ୟାସ ପ୍ରକାଶିତ ହେଉଛି ॥

---

ଆବରଣ [illegible] ଜେନା